# ସ୍ମରଣିକା



୧୪ଶ. ଓଡ଼ିଶା ରାଜ୍ୟ ସମ୍ମିଳନୀ

## ଭାରତୀୟ କମ୍ୟୁନିଷ୍ଟ ପାର୍ଟି

କମ୍ରେଡ୍ ସଦାନନ୍ଦ ନଗର, ଆସିକା ୨୧, ୨୨, ୨୩ ଓ ୨୪ ମାର୍ଚ୍ଚ ୧୯୯୨

# ସ୍ମରଣିକା କମିଟି

ଡ. ଶ୍ରୀକୃଷ୍ଣ ପଣ୍ଡା, ଅଧ୍ୟାପକ

ନିତ୍ୟାନନ୍ଦ ପ୍ରଧାନ, ଅଧ୍ୟାପକ

ପର୍ଶୁରାମ ପଣ୍ଡା, ଅଧ୍ୟାପକ

ପ୍ରଶାନ୍ତ କୁମାର ପାଛଯୋଷୀ, ସମ୍ପାଦକ

ପ୍ରକାଶ ପାତ୍ର

ଦେବେନ୍ଦ୍ର ପଣ୍ଡା

ରମେଶ ପାଢ଼ୀ

# ଅଭ୍ୟର୍ଥନା ସମିତି

**ପୃଷ୍ଠପୋଷକ—**

ହରିହର ଦାଶ
ରାଧାକୃଷ୍ଣ ପ୍ରଧାନ
ଡ଼ାକ୍ତର ପ୍ରଫୁଲ୍ଲ ଚନ୍ଦ୍ର ପାଢ଼ୀ

**ଚେୟାରମେନ୍—**

ଦୁର୍ଗାକୃଷ୍ଣ ପଣ୍ଡା, M.L.A.

**ଭାଇସ୍-ଚେୟାରମେନ୍—**

ବିଶ୍ୱନାଥ ସାହୁ, Ex-M.L A.
ପର୍ଶୁରାମ ପଣ୍ଡା, M.L.A.
ଗୌର ଚନ୍ଦ୍ର ପ୍ରଧାନ

**ସାଧାରଣ ସମ୍ପାଦକ—**

ନିତ୍ୟାନନ୍ଦ ପ୍ରଧାନ, M.L.A.

**ସମ୍ପାଦକ—**

ଲୁଚି ରେଡ଼ି
ହରପ୍ରସାଦ ଆଗ୍ରୱାଲ
ଶମ୍ଭୁ ପଣ୍ଡା
ଲଳିତ ମୋହନ ଦାଶ

**ସଭ୍ୟ—**

ପ୍ରଶାନ୍ତ କୁମାର ପାଟଯୋଷୀ
ପ୍ରକାଶ ପାତ୍ର
ଦେବେନ୍ଦ୍ର ପଣ୍ଡା
ମହନ୍ତର ନାୟକ
ଉଦୟ ଚନ୍ଦ୍ର ପାତ୍ର
ଅନନ୍ତରାମ ମହାକୁଡ଼
ଗୋକୁଳ ଚନ୍ଦ୍ର ପଣ୍ଡା
ଏନ୍. ନାରାୟଣା ରେଡ଼ି
କନା ସୁବାସ ଚନ୍ଦ୍ର ରାଓ
ସୋମନାଥ ନାୟକ
ଉଦୟନାଥ ମହାକୁଡ଼
ଶ୍ରୀହର୍ଷ ରଥ
ରମେଶ ଚନ୍ଦ୍ର ପାଢ଼ୀ
ସଦାନନ୍ଦ ପଟ୍ଟନାୟକ
ନବକୃଷ୍ଣ ନାୟକ
ବିଜୟ ଚନ୍ଦ୍ର ପୋଲାଇ
ଚିତ୍ତ ମହାପାତ୍ର
ଅରସୁଲ ପାତ୍ର
ନରସିଂହ ପାତ୍ର
ଗୋପାଳକୃଷ୍ଣ ପାଢ଼ୀ
ପରମାନନ୍ଦ ସାହୁ
ପୁରୁଷୋତ୍ତମ ବିଷୋୟୀ
ରବିନ୍ଦ୍ରନାଥ ସାମନ୍ତ
କର୍ତ୍ତିନ ପ୍ରଧାନ
ଅର୍ଣ୍ଣିମା ମିଶ୍ର
ଅନ୍ତର୍ଯ୍ୟାମୀ ସ୍ୱାଇଁ
ଏ. କୃଷ୍ଣମୂର୍ତ୍ତି
ଏ. ଗଣପତି
ବୃନ୍ଦାବନ ପଣ୍ଡା
ଦଣ୍ଡାସୀ ପରିଡ଼ା
ଅଳକନାଥ ମିଶ୍ର
ହରିବୋଲ ରାଉଳ
ଅଶୋକ ବେହେରା
ରାଜକିଶୋର ସାହୁ
ଦେବରାଜ ନାୟକ
କାହ୍ନୁ ପ୍ରଧାନ
ଅଭିମନ୍ୟୁ ପାଢ଼ୀ
ଗୋପାଳ ପାଢ଼ୀ
ବିଶ୍ୱନାଥ ସାହୁ
ବିଶ୍ୱନାଥ ସ୍ୱାଇଁ
ଗୌର ଚନ୍ଦ୍ର ପାତ୍ର
ହୃଷିକେଶ ମହାନ୍ତି
ହୃଷିକେଶ ପାଢ଼ୀ
ବିପିନ ପାତ୍ର
ଯୋଗେନ୍ଦ୍ର ପ୍ରଧାନ
ଜାଗିଲ ପ୍ରଧାନ
ଲୋକନାଥ ଆଗ୍ରୱାଲ
ବଳରାମ ଗୌଡ଼
ଏମ୍. ଅମର କୁମାର
ପ୍ରବୀଣ କୁମାର ଦାଶ
ହରି ଦଳେଇ
ରାମଚନ୍ଦ୍ର ବିଷୋୟୀ

# ॥ ପୁଞ୍ଜିବାଦ ଓ ସମାଜବାଦର ସଙ୍କଟ ॥

● ଗସ୍ ହଲ୍

( ଚେୟାରମ୍ୟାନ୍, ଯୁକ୍ତରାଷ୍ଟ୍ର ଆମେରିକା, କମ୍ୟୁନିଷ୍ଟ ପାର୍ଟି )

( ୧୯୯୧ ମସିହା ସେପ୍ଟେମ୍ବର ୧୫ ତାରିଖରେ ନ୍ୟୁୟର୍କ ଠାରେ ପ୍ରଦତ୍ତ ଭାଷଣ )

ପୁଞ୍ଜିବାଦ ଜଗତର ସଙ୍କଟ ଓ ସମାଜବାଦ ଜଗତର ସଙ୍କଟ, ଏ ଦୁଇଟି ଅଲଗା ଧରଣର ସଙ୍କଟ ଏବଂ ଦୁଇଟିର କାରଣ ମଧ୍ୟ ଭିନ୍ନ—ଏ ସମ୍ପର୍କରେ ମୁଁ କିଛି କହିବାର ସୁଯୋଗ ପାଇ ଆନନ୍ଦିତ ।

ଆପଣମାନେ ଜାଣନ୍ତି, ଆଜିର ଦ୍ରୁତ ପରିବର୍ତ୍ତନଶୀଳ ବିଶ୍ୱରେ ସବୁ କିଛି ଏପରି ପରିବର୍ତ୍ତିତ ହେଉଛି ଯେ, ତାହା ବୁଝିବା କଠିନ ହୋଇ ଉଠୁଛି । ଜଣେ ଏକ ପ୍ରକାର ଜଗତରେ ରାତିରେ ଶୋଉଛି ଏବଂ ପରଦିନ ସକାଳେ ଉଠି ଦେଖୁଛି ଯେ, ଜଗତଟା ସମ୍ପୂର୍ଣ୍ଣ ବଦଳି ଯାଇଛି ।

ଆଜିର ସମୟ ଏତେ ଅଦ୍ଭୁତ, କରୁଣ, ଉଦ୍ଭଟ ଯେ ବିଶ୍ୱରେ ଘଟଣାବଳୀ ଏପରି ଘଟିଯାଉଛି ମନେହୁଏ ତାହାର କୌଣସି ଅନ୍ତ ନାହିଁ । ଦୈନିକ ସଂବାଦପତ୍ର ଦେଖିଲେ "ଅବିଶ୍ୱାସ୍ୟ" ମନେହୁଏ ଯେମିତି ସେଗୁଡ଼ିକ ଅବିଶ୍ୱାସ ଯୋଗ୍ୟ ।

ଉଦାହରଣ ସ୍ୱରୂପ ମାନବ ଅଧିକାର ଉପରେ ଠିକ୍ ଏହି ସମୟରେ ମସ୍କୋରେ ଗୋଟିଏ ଆନ୍ତର୍ଜାତିକ ସମ୍ମେଳନ ଡକାଯାଇଛି । ସମ୍ମିଳନୀଟି ଏପରି ଅଦ୍ଭୁତ ବା ବେଦନାଦାୟକ କିଛି ନୁହେଁ । କିନ୍ତୁ ସବୁଠାରୁ ଯାହା ପରିହାସର ବିଷୟ ତାହା ହେଲା, ମାନବ ଅଧିକାର ସମ୍ପର୍କରେ ସମ୍ମିଳନୀ କଲାବେଳେ ମାନବ ଅଧିକାରକୁ କିପରି ଲଙ୍ଘନ କରାଯାଇଛି ତାହା ଦେଖିବା କଥା । ପଇଁତିରିଶଟି ଦେଶର ପ୍ରତିନିଧିମାନେ ଯେତେବେଳେ ସମ୍ମେଳନ ହଲକୁ ଯିବେ ସେତେବେଳେ ସେମାନଙ୍କୁ ଅତିକ୍ରମ କରିଯିବାକୁ ହେବ ଏକ ବିଶାଳ, ଶୂନ୍ୟ ଦରଜାବନ୍ଦ, ତାଲାଦିଆ ଏକ ଭବନର ବାଟ ଦେଇ । ଏହା ଗୋଟିଏ ସୁନ୍ଦର ଭବନ, ସେଠାରେ ଏକଦା ଥିଲା ଗୋଟିଏ ରାଜନୈତିକ ଦଳର ଅତ୍ୟନ୍ତ କର୍ମଚଞ୍ଚଳ ଜାତୀୟ ଅଫିସ ସବୁ. ସେ ଦଳ ହେଲା ସୋଭିଏତ୍ ୟୁନିଅନର କମ୍ୟୁନିଷ୍ଟ ପାର୍ଟି ଯାହା ଥିଲା ଲେନିନଙ୍କ ପାର୍ଟି, ଯାହାର ସଦସ୍ୟ ସଂଖ୍ୟା ଥିଲା ଏକ କୋଟି ୫୦ ଲକ୍ଷ ।

ଏହାକୁ ଆହୁରି ଉଦ୍ଭଟ କରି ପକାଇଛି ଏଇ ଘଟଣା ଯେ, ସୋଭିଏତ୍ ୟୁନିଅନର ରାଷ୍ଟ୍ରପତି ମିଖାଇଲ ଗୋର୍ବାଚଭ ସମ୍ମିଳନୀରେ ତାଙ୍କର ସ୍ୱାଗତ ଭାଷଣରେ ଏଇ ତାଲାବନ୍ଦ ଘର, ବେଆଇନ କମ୍ୟୁନିଷ୍ଟ ପାର୍ଟି ଓ ତା'ର ସଂବାଦପତ୍ର ଗୁଡ଼ିକ ଅଥବା ମାନବିକ ଓ ନାଗରିକ ଅଧିକାରର ବ୍ୟାପକ ଲଙ୍ଘନ ଏବଂ ବିଶେଷ କରି ଲକ୍ଷ ଲକ୍ଷ ସୋଭିଏତ ନାଗରିକମାନଙ୍କର ରାଜନୈତିକ ଅଧିକାର ଲଙ୍ଘନ ବିଷୟରେ ଗୋଟିଏ ପଦ ମଧ୍ୟ କହିଲେ ନାହିଁ । ବିଶେଷ କରି ପୃଥିବୀରେ ପ୍ରଥମ ସମାଜତାନ୍ତ୍ରିକ ଦେଶରେ ବର୍ତ୍ତମାନ ଯେଉଁ କମ୍ୟୁନିଷ୍ଟ ବିରୋଧୀ ନିର୍ଯ୍ୟାତନର ଢେଉ ବହିଯାଉଛି, ଯେଉଁ ରାଜନୈତିକ ନିର୍ଯ୍ୟାତନାର ସେ ନିଜେ ଜଣେ ମଦତ୍‌କାରୀ ସେ ସମ୍ପର୍କରେ ପଦଟିଏ ହେଲେ କହିଲେ ନାହିଁ । **ବିପନ୍ନ କ୍ୟୁବା**—ମନେହୁଏ ଯେପରି କରୁଣାତ୍ମକ ଘଟଣାର ଶେଷ ନାହିଁ କି ବେଦନାର ଅନ୍ତ ନାହିଁ ।

ମୁଁ ସେହି ବୁଧବାର ରାତିରେ ଶୋଇବାକୁ ଗଲି ଏବଂ ଗୁରୁବାର ସକାଳେ ନିଦରୁ ଉଠି ଶୁଣିଲି ଯେ ଗୋର୍ବା-ଚେଭ ମାର୍କିନ ବିଦେଶ ସଚିବ ଶ୍ରୀ ବେକରଙ୍କ ସହ ଏକ ବୈଠକ ପରେ ବିଶ୍ୱ ସମ୍ମୁଖରେ ଘୋଷଣା କରିଛନ୍ତି ଯେ, ସେ କ୍ୟୁବାରୁ ସମସ୍ତ ସୋଭିଏତ୍ ସୈନ୍ୟ ପ୍ରତ୍ୟାହାର କରି ନେଉଛନ୍ତି ଏବଂ କ୍ୟୁବାକୁ ଯେଉଁ ସଙ୍କଟକାଳୀନ ସାହାଯ୍ୟ ଦିଆଯାଉଥିଲା ତାହା ସମ୍ପୂର୍ଣ୍ଣ ଭାବେ ବନ୍ଦ କରି ଦେଇଛନ୍ତି ।

ଏହା ଅତି ବେଦନା ଦାୟକ କାରଣ ମାତ୍ର କେତେକ ସପ୍ତାହ ଆଗରୁ ପେଣ୍ଟାଗନ୍ ଘୋଷଣା କରିଛି ଯେ ସେମାନେ କ୍ୟୁବାର ଗୁଆନ୍ତାନାମୋ ଉପସାଗରରେ ଏକ ବିଶାଳ ମାର୍କିନ ନୌଘାଟି ପୁନର୍ନିର୍ମାଣ ଓ ବିସ୍ତୃତି ପାଇଁ କାର୍ଯ୍ୟପନ୍ଥା ଗ୍ରହଣ କରିବେ । କେହି ମନେ କରିପାରନ୍ତି ଗୋର୍ବାଚେଭ ଅନ୍ତତଃ ଶ୍ରୀ ବେକରଙ୍କୁ ଏହା କହିଥିବେ ଯେ ବା "ଆସନ୍ତୁ ଆମେ ଏକା ସାଙ୍ଗରେ ମାର୍କିନ୍ ଓ ସୋଭିଏତ୍ ସେନା ପ୍ରତ୍ୟାହାର ନେଇ ଆଲୋଚନା କରିବା ।" ନା, ଗୋର୍ବାଚେଭ ମାର୍କିନ ଉପନିବେଶବାଦୀ ଓ ସାମ୍ରାଜ୍ୟବାଦୀ ସଶସ୍ତ୍ରବାହିନୀ ସମ୍ପର୍କରେ କିଛି ବି କହିନାହାନ୍ତି, ଯାହା ଗତ ତିରିଶ ବର୍ଷ କ୍ୟୁବାର ଅସ୍ତିତ୍ୱ ପାଇଁ ଦୈନନ୍ଦିନ ବିପଦ ହୋଇ ରହିଛି ।

ଫଳରେ ସୋଭିଏତ୍ ପ୍ରତ୍ୟାହାର କରନେଲା ଆଉ ପେଣ୍ଟାଗନ ନିଷ୍କଣ୍ଟକ ଭାବେ ଘାଟି ତିଆରି କରିବାରେ ଲାଗିଲା ।

ସବୁଠାରୁ ଉଦ୍ଭଟ ଅବିଶ୍ୱାସ କଥା ହେଲା— ଗୋର୍ବାଚେଭ ଏଇ ଘୋଷଣା କଲେ କ୍ୟୁବା ସରକାରଙ୍କ ସହ ବିନ୍ଦୁମାତ୍ର ଆଲୋଚନା ନ କରିବା ତାଙ୍କୁ ନୋଟିସ ନ ଦେଇ କେହି ଭାବିପାରନ୍ତି ଗୋର୍ବାଚେଭ ଜରୁରୀ ଫୋନ୍‌କରି ଫିଡେଲ କାଷ୍ଟ୍ରୋଙ୍କୁ କହି ଥାଇପାରନ୍ତି । ତାହା ନୈତିକ ଥାଉ, କିନ୍ତୁ ଏଇ ଲଜ୍ଜାଜନକ, ଦୁର୍ଭାଗ୍ୟଜନକ ବିଶେଷ ଘଟଣା ସମ୍ପର୍କରେ ସୋଭିଏତ୍ ଜନଗଣଙ୍କୁ ମଧ୍ୟ କିଛି କୁହାଗଲା ନାହିଁ । କିନ୍ତୁ ଦିନ ହେଲା ଗୋର୍ବାଚେଭ କୌଣସି ବିଷୟରେ ସୋଭିଏତ ଜନସାଧାରଣଙ୍କ ସହ କୌଣସି ଆଲୋଚନା କରୁନଥିଲେ ।

ଏଇ ଏକ ତରଫା ସିଦ୍ଧାନ୍ତ ସମାଜତାନ୍ତ୍ରିକ ଆନ୍ତର୍ଜାତିକ ସହତ ଓ ସମାଜତାନ୍ତ୍ରିକ ଆନ୍ତର୍ଜାତିକ ସମ୍ପର୍କରେ ପ୍ରାଥମିକ ନିୟମକୁ ଏକବାରେ ଭଙ୍ଗ କଲା । ଏହା ଏକତିରିଶ ବର୍ଷର ସରକାର ସହିତ ସରକାରର, ପାର୍ଟି ସହିତ ପାର୍ଟିର ସମ୍ପର୍କ ଭଙ୍ଗ କଲା । ଏହାଦ୍ୱାରା ସୋଭିଏତ୍—କ୍ୟୁବା ଚୁକ୍ତି ସମୂହ ଏବଂ ବାଣିଜ୍ୟ ଚୁକ୍ତିଗୁଡ଼ିକୁ ଅସମ୍ମାନ କରାଗଲା । ଏହା ହେଲା ଆନ୍ତର୍ଜାତିକ ଶ୍ରମିକ ଶ୍ରେଣୀର ସହତ ଭିତ୍ତିକରି ବର୍ଷ ପରେ ବର୍ଷ ଯେଉଁ ନିଃସ୍ୱାର୍ଥ ସାହାଯ୍ୟ ଦେବା କଥା ତାହା ପ୍ରତି ବିଶ୍ୱାସଘାତକତା, ଯେଉଁ ସାହାଯ୍ୟ ସୋଭିଏତ୍ ଜନଗଣ କେବଳ କ୍ୟୁବାକୁ ନୁହେଁ ପରନ୍ତୁ ତୃତୀୟ ବିଶ୍ୱର୍ ଦେଶମାନଙ୍କୁ ତଥା ଜାତୀୟ ମୁକ୍ତି ଆନ୍ଦୋଳନ ଗୁଡ଼ିକୁ ସାହାଯ୍ୟ ଦେଇ ଆସିଛନ୍ତି, ଗୋର୍ବାଚେଭଙ୍କ କାମ ତାହା ପ୍ରତି ମଧ୍ୟ ବିଶ୍ୱାସଘାତକତା । ଏତେ ବେଶି ଦେଶକୁ ଏହାଠାରୁ ବେଶି କେହି ଦେଇନାହାନ୍ତି ।

କ୍ୟୁବା ଯେଉଁ ଦିନଠାରୁ ସ୍ୱାଧୀନ ହୋଇଛି, ସେଦିନ ଠାରୁ ଏକାଦିକ୍ରମେ ମାର୍କିନ ସାମ୍ରାଜ୍ୟବାଦୀମାନଙ୍କ ଆକ୍ରମଣର ଶିକାର ହୋଇ ଆସିଛି ଏବଂ ଏହା ଆମ ଗୋଲାର୍ଦ୍ଧରେ ଏକମାତ୍ର ସମାଜତାନ୍ତ୍ରିକ ଦେଶ । ଯେଉଁ ଦିନ ଠାରୁ ମାର୍କିନ ସାମ୍ରାଜ୍ୟବାଦ କ୍ୟାରିବିୟାନ ଉପସାଗରରେ ସବୁଠାରୁ ଲାଭଜନକ ଉପନିବେଶକୁ ସମାଜତନ୍ତ୍ର ନିକଟରେ ହରାଇଛି । ସେହିଦିନ ଠାରୁ ପ୍ରତ୍ୟେକଟି ମାର୍କିନ ପ୍ରଶାସନ କ୍ୟୁବା ଉପରେ ଅର୍ଥନୈତିକ ଅବରୋଧ ବିୟୁକ୍ତ ଓ ଅପପ୍ରଚାର ତୀବ୍ରତର କରିଛି ଏବଂ କ୍ୟୁବା ଭ୍ରମଣ ଉପରେ ନିଷେଧାଜ୍ଞା ଜାରି କରିଛି ।

'ବେ ଅଫ୍ ପିଗସ'ରେ ଆକ୍ରମଣ, କ୍ଷେପଣାସ୍ତ୍ର ସଙ୍କଟ ଏକାଧିକ୍ରମେ ସାମରିକ ଝାମେଲ, ସିଆ.ଇ.ଏ.ର ଗୁପ୍ତ ଚକ୍ରାନ୍ତ, ମିୟାମି ଘାଟିରୁ ଉସକାନ ଦେବା ଏବଂ କୁଖ୍ୟାତ ରେଡ଼ିଓ ଟି.ଭି.ରେ ପ୍ରଚାର ସତ୍ତ୍ୱେ ସମାଜତାନ୍ତ୍ରିକ କ୍ୟୁବା ତିଷ୍ଠି ରହିଛି ଏବଂ ବିକଶିତ ହେଉଛି ।

ନୂଆ ଲଉଡସ୍କେପ, ବିଶେଷ କରି ସୋଭିଏତ୍ ଇଉନିଅନ ସହ ସମାଜତାନ୍ତ୍ରିକ ବାଣିଜ୍ୟ ଚୁକ୍ତି ସଙ୍କଟଜନକ ହେବା ସତ୍ତ୍ୱେ କ୍ୟୁବା ନିଜକୁ ସମ୍ଭାଳି ନେବାରେ ନିୟନ୍ତ୍ରଣ କରିବାରେ ଏବଂ ନିଜର ଅସ୍ଥା ଶକ୍ତ କରିବାରେ ସକ୍ଷମ ହୋଇଛି ।

ଗୋର୍ବାଚେଭଙ୍କ ସାଂପ୍ରତିକ ଘୋଷଣା କ୍ୟୁବା ପାଇଁ ଏକ ମାରାତ୍ମକ ଆଘାତ । ଅର୍ଥନୈତିକ ସାହାଯ୍ୟବିନା କ୍ୟୁବାକୁ ଆହୁରି କଠୋର ବ୍ୟବସ୍ଥା ନେବା ପାଇଁ ବାଧ୍ୟ କରିବ । ଯେଉଁଥି ପାଇଁ କ୍ୟୁବା ନିଜକୁ ପ୍ରସ୍ତୁତ କରିଥିଲା । ସୋଭିଏତ୍ ସାମରିକ ବାହିନୀ ଯାହା ମାର୍କିନ ସାମ୍ରାଜ୍ୟବାଦକୁ ସମୁଦ୍ରରେ ଅଟକାଇ ରଖିଥିଲା ତାର ପ୍ରତ୍ୟାହାର ଫଳରେ ମାର୍କିନ ସାମ୍ରାଜ୍ୟବାଦ ତା' ନିଜ ଦେଶରୁ କ୍ୟୁବା ଆକ୍ରମଣ କରିବାର ପଥ ଉନ୍ମୁକ୍ତ କରିଦେଲା । ଅତୀତ କଥା ବାଦ୍ ଦେଲେ ମଧ୍ୟ ସାଂପ୍ରତିକ ତଥ୍ୟରୁ ଜଣାଯାଉଛି ଯେ, ବୁଶ୍ 'ବେ ଅଫ୍‌ପିଗସ'ରୁ ଆକ୍ରମଣ ପାଇଁ ମୂଳପୂର ଉଚ୍ଚ ପର୍ଯ୍ୟାୟର କାର୍ଯ୍ୟପନ୍ଥା ଗ୍ରହଣ କରିଛନ୍ତି ।

ଏହାପରେ ଭାବେ ଗୋର୍ବାଚେଭଙ୍କ ସର୍ବଶେଷ ଘୋଷଣା ଦ୍ୱାରା ମାର୍କିନ ସାମ୍ରାଜ୍ୟବାଦ ଗତ ୩୦ ବର୍ଷ ମଧ୍ୟରେ କ୍ୟୁବାର ସମାଜତନ୍ତ୍ରକୁ ଧ୍ୱଂସ କରିବାର ସବୁଠାରୁ ବଡ଼ ସୁଯୋଗ ଦେଖିପାରୁଛି ।

ଏହି ଘଟଣା ଗୁଡ଼ିକ କ୍ୟୁବା ବିରୁଦ୍ଧରେ ବିଶ୍ୱ ସାମ୍ରାଜ୍ୟବାଦର ପ୍ରକାଶ୍ୟ ଆକ୍ରମଣ ପାଇଁ ସବୁଜ ସଙ୍କେତ ସ୍ୱରୂପ ଏହି ଘଟଣା ଗୁଡ଼ିକ କାମ କରିଛି । ରକ୍ତର ସ୍ୱାଦ ଚାଖିଥିବା ବିଶାଳ, ନିର୍ମମ ହତ୍ୟାକାରୀ ହାଙ୍ଗର ମାଛପରି ସାମ୍ରାଜ୍ୟବାଦ ଆକ୍ରମଣ କରିବା ଲାଗି ଭୀଷଣ ପ୍ରଲୁବ୍ଧ ହେବ । କେବଳ ମାତ୍ର କ୍ୟୁବା ନୁହେଁ, ତୃତୀୟ ବିଶ୍ୱର ଦେଶଗୁଡ଼ିକ ମଧ୍ୟ ସାମ୍ରାଜ୍ୟବାଦୀ ଲୁଣ୍ଠନକାରୀମାନଙ୍କର ଭଲ ଶିକାର ହିସାବରେ ବିବେଚିତ ହେବେ ।

ଗୋର୍ବାଚେଭଙ୍କ ଘୋଷଣାର ଗୋଟିଏ ଦିନ ପରେ 'ନ୍ୟୁୟର୍କ ଟାଇମସ'ର ଗୋଟିଏ ପ୍ରବନ୍ଧରେ ପ୍ରଶ୍ନ କରାଯାଇଛି "କାଷ୍ଟ୍ରୋଙ୍କ ବିରୁଦ୍ଧରେ ବ୍ୟବସ୍ଥା ଗ୍ରହଣ କରିବା ନ କରିବା କଥା କ'ଣ ?" ପ୍ରବନ୍ଧଟିରେ ପ୍ରତ୍ୟେକ ମାର୍କିନ ଆକ୍ରମଣ ତଥା ଉସକେଇବା ବିଷୟର ସବୁଦିଗରୁ ଠିକଣାଖି ଆଲୋଚନା କରାଯାଇଛି ।

ଗୋର୍ବାଚେଭଙ୍କ ସହ ସେହି ବୈଠକ ପରେ 'ଶ୍ରୀ ବେକର' ଘୋଷଣା କରିଛନ୍ତି ଯେ ମସ୍କୋ, ଆଫଗାନିସ୍ଥାନ

ସହିତ ତା'ର ସମ୍ପର୍କର ବନ୍ଧନ ଛିନ୍ନ କରିବ । ଏ କ୍ଷେତ୍ରରେ ମଧ୍ୟ ଆଫଗାନ ସରକାରଙ୍କ ସହ ପୂର୍ବରୁ କୌଣସି ଆଲୋଚନା ନକରି ତାହା କରାଗଲା । ଘଟଣା ହେଉଛି ଆଫଗାନ ପ୍ରତି ବିପ୍ଳବୀମାନଙ୍କର ମାର୍କିନ ଅସ୍ତ୍ରଶସ୍ତ୍ରର କୌଣସି ଦରକାର ନାହିଁ । ସେମାନେ ସାଉଦିଆରବ ମାଧ୍ୟମରେ ଏହା ପାଉଛନ୍ତି । ଅପର ପକ୍ଷରେ ଆଫଗାନ ସରକାର କେବଳ ମାତ୍ର ସୋଭିଏତ୍ ନିକଟରୁ ଅସ୍ତ୍ର ପାଆନ୍ତି । ଗୋର୍ବାଚେଭ ଏବଂ 'ବେକର' କିପରି ଆଫଗାନିସ୍ଥାନକୁ ତଥା କଥିତ ସ୍ୱାଧୀନ ନିର୍ବାଚନ ଆଡ଼କୁ ଠେଲି ଦିଆଯାଇ ପାରିବ ସେ ବିଷୟରେ ମଧ୍ୟ ଆଲୋଚନା କରିଛନ୍ତି ।

ଦିନକୁ ଦିନ ଏହା ପରିଷ୍କାର ହୋଇଯାଉଛି ଯେ ଶ୍ରୀ ବୁଶ୍ ଏବଂ ଶ୍ରୀ ବେକର ବନ୍ଧୁକରେ ଗୁଳି ଭର୍ତ୍ତିକରି ଦେଉଛନ୍ତି ଏବଂ ଗୋର୍ବାଚେଭ ଏବଂ ୟେଲତ୍‌ସିନ ସେହି ଗୁଳି ଛାଡୁଛନ୍ତି ।

ଏହି ସବୁ କାର୍ଯ୍ୟ ଫଳରେ ଆନ୍ତର୍ଜାତିକ ସମ୍ପର୍କର କ୍ଷେତ୍ରରେ ଯେଉଁ ନୂତନ ଶୂନ୍ୟତା ସୃଷ୍ଟି ହୋଇଛି, ମାର୍କିନ ଯୁକ୍ତରାଷ୍ଟ୍ରରେ ଆମ୍ଭମାନଙ୍କୁ ତାହା ପୂରଣ କରିବାର ପନ୍ଥା ଖୋଜିବାକୁ ହେବ । ସମାଜତାନ୍ତ୍ରିକ କ୍ୟୁବାର ଅସ୍ତିତ୍ୱ ରକ୍ଷା, ଗୋଟିଏ ସ୍ୱାଧୀନ ସାର୍ବଭୌମ ସମାଜତାନ୍ତ୍ରିକ ଦେଶ ହିସାବରେ ତାର ବଞ୍ଚି ରହିବାର ଅଧିକାରକୁ ରକ୍ଷା କରିବା ପାଇଁ ଆହୁରି ଶକ୍ତିଶାଳୀ ଆହୁରି ବ୍ୟାପକ ସାମ୍ରାଜ୍ୟବାଦ ବିରୋଧି ଫ୍ରଣ୍ଟ ଗଠନ ଲାଗି ଆମ୍ଭମାନଙ୍କୁ ଏବେ ପ୍ରୟୋଜନୀୟ ଜରୁରୀ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ହେବ ।

ଏଠାରେ ଆହୁରି ଗୋଟିଏ ଉଦ୍‌ଭଟ, କରୁଣ ଘଟଣାର ଉଦାହରଣ ରହିଛି । ଏହି ସପ୍ତାହରେ ୟୁ.ଏସ୍.ଏସ୍.ଆର.ରୁ ବିଚ୍ଛିନ୍ନ ହେବା ପରେ ଲିଥୁଆନିଆର ସ୍ୱାଧୀନ ସରକାରଙ୍କ ପ୍ରଥମ କାମ ହେଲା—ଏକ ସମ୍ମାନସୂଚକ ତାଲିକା ପ୍ରକାଶ କରିବା ସେ ତାଲିକାରେ ବର୍ତ୍ତମାନ ଜୀବିତ ବା ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ମୃତ କେତେକ କମ୍ୟୁନିଷ୍ଟ ବିଦ୍ୱେଷୀ ଜାତି ବିଦ୍ୱେଷୀଙ୍କର ନାମ ରହିଛି, ଯେଉଁମାନେ କି ଲିଥୁଆନିଆର ଏକ ଲକ୍ଷ କମ୍ୟୁନିଷ୍ଟ, ଫାସିବାଦ ବିରୋଧୀ ଓ ଗଣତନ୍ତ୍ର ପ୍ରେମୀଙ୍କୁ ହତ୍ୟା କରିଥିଲେ ।

## ଭିନ୍ନ ପ୍ରକାରର ଘଟଣା :

ତଥାପି ଏହି ସପ୍ତାହରେ ଅବଶ୍ୟ ଭିନ୍ନ ପ୍ରକାରର ଘଟଣା ଘଟିଛି ଯାହା ଅଦ୍ଭୁତ ବା ଉଦ୍‌ଭଟ ନୁହେଁ । ସୋଭିଏତ୍‌ର ସରକାରୀ ସମ୍ବାଦ ସଂସ୍ଥା "ଟାସ୍" ଖବର ଦେଇଛି ୟେଲତ୍‌ସିନ୍ ଗୋର୍ବାଚେଭଙ୍କ ଦ୍ୱାରା କମ୍ୟୁନିଷ୍ଟ ପାର୍ଟି ଓ ତାର ସମ୍ବାଦ ପତ୍ରକୁ ବେଆଇନ୍ କରିବାର ଡ଼ିକ୍ରୀ ଜାରି ପରେ ମସ୍କୋ, ଲେନିନ୍ ଗ୍ରାଡ୍ ଏବଂ ଅନ୍ୟାନ୍ୟ ସହରରେ କିଛି ଉତ୍ତେଜନା ପୂର୍ଣ୍ଣ ଘଟଣା ଘଟିଛି ।

କମ୍ୟୁନିଷ୍ଟ ପାର୍ଟି ବେଆଇନ୍ ହେବା ପରେ ଏହି ପ୍ରଥମ କରି ନେତୃସ୍ଥାନୀୟ କମ୍ୟୁନିଷ୍ଟମାନେ ବୈଠକ କରିଛନ୍ତି । 'ଟାସ୍' ଆହୁରି ଖବର ଦେଇଛି ଯେ, ଆହୁରି ବେଶୀ ସଂଖ୍ୟାରେ କମ୍ୟୁନିଷ୍ଟ କ୍ଲବ ଗୁଡ଼ିକ କାମ କରିବାକୁ ଆରମ୍ଭ କରିଛନ୍ତି ପ୍ରକାଶ୍ୟରେ କେତେକ ଗୋପନରେ । ମୁଁ ମନେ କରେ ବେଆଇନ କରିବାର କୁଖ୍ୟାତ ଡ଼ିକ୍ରୀଜାରି ପରେ ଏହାକୁ ସୋଭିଏତ୍ ୟୁନିଅନ କମ୍ୟୁନିଷ୍ଟ ପାର୍ଟିର 'ପୁନରୁତ୍‌ଥାନ' କୁହାଯିବ । ୟେଲତସିନ୍-ଗୋର୍ବାଚେଭଙ୍କର କମ୍ୟୁନିଷ୍ଟ ପାର୍ଟି ବେଆଇନର ଏହାହିଁ ହେଉଛି ଜବାବ୍ ।

ଜଣେ ସାମ୍ବାଦିକ ସୋଭିଏତ୍ ୟୁନିଅନର କେତେକ ଶ୍ରମିକଙ୍କୁ କମ୍ୟୁନିଷ୍ଟ ପାର୍ଟିର ଏହି 'ପୁନରୁତ୍‌ଥାନ' ବିଷୟରେ ପ୍ରଶ୍ନ କରିଥିଲେ । ସେମାନେ ଉତ୍ତର ଦେଲେ 'ଆମେ ଶ୍ରମିକ-ମାନେ କମ୍ୟୁନିଷ୍ଟମାନଙ୍କୁ ସ୍ୱାଗତ ଜଣାଉ । ଆମେ ସେମାନଙ୍କୁ ଚାହୁଁ ସେମାନଙ୍କୁ ବାଦ୍‌ଦେଇ ଆମ୍ଭେମାନେ ବସ୍ତୁତଃ ଚଳି ପାରିବୁ ନାହିଁ ।"

ଆଉ ଜଣେ ରିପୋର୍ଟର ୟେଲସିନ୍‌ଙ୍କର ନିଜ ଜିଲ୍ଲାର ଜଣେ କୃଷକର ସାକ୍ଷାତକାର ନେଇଥିଲେ । କୃଷୀଟି କହିଲା, ନିର୍ବୋଧ ଏବଂ ଭ୍ରମାବଦ୍ଧ ଆଇନ ଗୁଡ଼ିକ ପାସ୍ କରିବା ପାଇଁ ସମୟ ନଷ୍ଟ ନ କରି ୟେଲତସିନ୍ ଏବଂ ସୋଭିଏତ୍ ପାର୍ଲ୍ୟାମେଣ୍ଟର ଅଫିସରମାନେ ବିଲକୁ ଯାଇ ଆଳୁ ଖୋଳିବା ଉଚିତ । କାରଣ ସେମାନେ ଯେଉଁ ସମୟ ବିତାଇ ବୈଠକ କରିଛନ୍ତି ସେହି ସମୟରେ ୫ଟା କ୍ୱିଣ୍ଟାଲର ଆଳୁ ଖୋଳାଯାଇ ପାରିଥାନ୍ତା ।" ସେ ପୁଣି କହିଲେ "ମୁଁ ୟେଲ୍‌ସିନ୍‌ଙ୍କର ଜେଜେବାପାଙ୍କୁ ଜାଣିଛି । ସେ ଥିଲେ ଜଣେ ଇଡ଼ିଅଟ୍ । ମୁଁ ତାଙ୍କ ବାପାଙ୍କୁ ଜାଣିଛି । ସେ ମଧ୍ୟ ଥିଲେ ଜଣେ ଇଡ଼ିଅଟ୍ । ବୋରିସ୍ ମଧ୍ୟ ଠିକ୍ ତାଙ୍କ ବାପାଙ୍କ ପରି ଇଡ଼ିଅଟ୍ ।"

ମୁଁ ଏ ଗୁଡ଼ିକରେ ଦେଖୁଛି ସୋଭିଏତ୍ ଶ୍ରମିକ ଓ କୃଷକମାନଙ୍କର ପ୍ରଥମ ବୋଧ ଓ ପ୍ରତିବାଦର ପ୍ରକାଶ । ଏ ଗୁଡ଼ିକ ହେଉଛି ସମାଜତନ୍ତ୍ର ଆଡ଼କୁ ସୋଭିଏତ୍ ସମାଜକୁ ଫେରେଇ ଆଣିବା ଦିଗରେ ତୃଣମୂଳରୁ (grass root)ରୁ ସଂଗ୍ରାମର ଅଙ୍କୁର । ସମାଜତନ୍ତ୍ର ମରି ନାହିଁ । ସେ ପୁଣି ମୁଣ୍ଡ ଟେକୁଛି ।

## ସମାଜତନ୍ତ୍ରର ସଙ୍କଟ ନାହିଁ :

ଆପଣମାନେ ଜାଣନ୍ତି ମାର୍କିନ ଧନତନ୍ତ୍ରର ସଙ୍କଟ ସମ୍ପର୍କରେ ବକ୍ତୃତା ଦେବା ସହଜ। କିନ୍ତୁ ଏବେ ତାହା ଏତେ ସହଜ ନୁହେଁ କାରଣ ଆମକୁ ଦୁଇଟି ସଙ୍କଟ ବିଷୟରେ ବିଚାର କରିବାକୁ ହେବ।

ଆମେ ସମସ୍ତେ ଜାଣିଛେ ଯେ, ନିଜର ପରିବାର ସମ୍ପର୍କରେ ସମାଲୋଚନା କେତେ କଠିନ ଓ ବେଦନାଦାୟକ। ସେଥିପାଇଁ ଜଣେ ବିଶ୍ୱସ୍ତ ସୈନିକ ହିସାବରେ ଶ୍ରମିକ ଶ୍ରେଣୀ ଓ ସମାଜତନ୍ତ୍ର ସମ୍ପର୍କରେ ସମାଲୋଚନା କରିବା କଷ୍ଟକର। କିନ୍ତୁ ସତ୍ୟ ଏବଂ ନୀତିବୋଧକୁ ଅବଶ୍ୟ ନିଖୁଣ ରଖିବାକୁ ହେବ। ସୋଭିଏତ୍ ୟୁନିଅନରେ କମ୍ୟୁନିଷ୍ଟ ବିରୋଧି ଯେଉଁ ନିର୍ଯ୍ୟାତନା ଆରମ୍ଭ ହୋଇଛି ତାହାକୁ ସତରେ ସମର୍ଥନ କରିବାର କୌଣସି ବାଟ ନାହିଁ।

ଏହା ଆହୁରି କଠିନ ଏହି କାରଣ ଯେ ଆପଣ ଜାଣନ୍ତି ମୁଁ ଏବଂ ଅନ୍ୟମାନେ ହଜାରେ ଥର କହିଛୁ ଯେ, ସମାଜତାନ୍ତ୍ରିକ ବ୍ୟବସ୍ଥାରେ କୌଣସି ସଙ୍କଟ ନାହିଁ ଏବଂ ରହିବ ନାହିଁ ମଧ୍ୟ। କାରଣ ସମାଜତନ୍ତ୍ର ହେଉଛି ସୁସମଞ୍ଜସ୍ୟ ବ୍ୟବସ୍ଥା।

ଘଟଣା ହେଉଛି ସମାଜତାନ୍ତ୍ରିକ ବ୍ୟବସ୍ଥାରେ କୌଣସି ସଙ୍କଟ ନ ଥିଲା। ଆପଣମାନେ ଅନେକେ ଏହା ଜାଣନ୍ତି ଏବଂ ମୁଁ ମଧ୍ୟ ଏହା ଜାଣେ। ସମସ୍ୟା ହେଉଛି ସମାଜତନ୍ତ୍ରର ନିର୍ମାତାମାନଙ୍କ ମଧ୍ୟରୁ ଅନେକେ ଏହା ଜାଣନ୍ତି ନାହିଁ।

ସୁତରାଂ ବର୍ତ୍ତମାନ ଆମକୁ ଦୁଇ ପ୍ରକାରର ସଙ୍କଟ ସମ୍ପର୍କରେ କାମ କରିବାକୁ ହେବ—ଧନତନ୍ତ୍ରର ସଙ୍କଟ ଏବଂ ସମାଜତନ୍ତ୍ରର ସଙ୍କଟ। ଏହି ଦୁଇଟି ସଙ୍କଟକୁ ବୁଝିବା ପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ସେ ଦୁଇଟି କି ପ୍ରକାରର ଭିନ୍ନ ଧରଣର। ଧନତନ୍ତ୍ରର ସଙ୍କଟ ନିୟମ ଦ୍ୱାରା ପରିଚାଳିତ ଏବଂ ତାହା ଅବଶ୍ୟମ୍ଭାବୀ।

## ମାର୍କିନ ଧନତନ୍ତ୍ରର ସଙ୍କଟ :

ସମାଜତନ୍ତ୍ରର ସଙ୍କଟ ନିୟମାନୁଗ ନୁହେଁ। ଏବଂ ତାହା ଅବଶ୍ୟମ୍ଭାବୀ ମଧ୍ୟ ନୁହେଁ। ବର୍ତ୍ତମାନ ସଙ୍କଟ ସୃଷ୍ଟିର କୌଣସି କାରଣ ନଥିଲା। ଏ କ୍ଷେତ୍ରରେ ମୁଁ ଯଦି ଏହାକୁ "ମଣିଷ ତିଆରି ସଙ୍କଟ" ବୋଲି କହେ ତାହା ହେଲେ କେହି ଆପତ୍ତି କରିବେ ନାହିଁ ବୋଲି ମନେ ହୁଏ।

ମାର୍କିନ ଧନତନ୍ତ୍ରର ସଙ୍କଟ ତାହାର ବ୍ୟବସ୍ଥା ମଧ୍ୟରେ ହିଁ ନିହିତ—ଅତୃପ୍ତ ଲାଳସା ଏବଂ ଯୌଥ କମ୍ପାନି-ମାନଙ୍କର ସବୁଠାରୁ ବେଶି ଲାଭ ପାଇଁ ତାଡ଼ନା। ଏହା ହେଉଛି ଧନତନ୍ତ୍ରର ଏକବାରେ ସାରମର୍ମ ଏବଂ ସଙ୍କଟରେ ମୂଳ କାରଣ।

ଏଥିରୁ ପରିତ୍ରାଣର କୌଣସି ବାଟ ନାହିଁ। ଏହାର ଫଳ ହେଲା ଦୁଇ କୋଟି ବେକାର ଏବଂ ୩୦ ଲକ୍ଷ ଗୃହହୀନ। ଆଜି ଅନେକଙ୍କର ଗୃହହୀନ ଅବସ୍ଥାରେ ଦ୍ୱିତୀୟ ପୁରୁଷ ଚାଲିଛି। ଗୃହହୀନ ଅନେକ ଶିଶୁ ମଧ୍ୟ ତୃତୀୟ ପୁରୁଷରେ ଜନ୍ମିଛନ୍ତି।

ଧନତନ୍ତ୍ରର ସଙ୍କଟ ହେଉଛି ଲାଉନ ହାଇଟ, ଲସ୍ ଏଞ୍ଜେଲସ୍, ବେନ୍‌ସନ ହାଷ୍ଟ, କ୍ୟାନେକ, ହାର୍ଟଫୋର୍ଡ ବିଚ, ସିକାଗୋ ପ୍ରଭୃତି ଦେଶର ପ୍ରାୟ ପ୍ରତ୍ୟେକ ବଡ଼ ସହରରେ ଜାତିଗତ ଦଙ୍ଗା ସୃଷ୍ଟି।

ଧନତନ୍ତ୍ରର ସଙ୍କଟ ହେଉଛି ଜାତି ବିଦ୍ୱେଷର ସଙ୍କଟ। ଭୂମିଷ୍ଠ ଶିଶୁ ମୃତ୍ୟୁର ହାର ବୃଦ୍ଧି। ଆଜି ଯେତେ ଆମେରିକାନ୍ ଓ ଆଫ୍ରିକାନ୍ ତରୁଣ କଲେଜରେ ପଢ଼ୁଛନ୍ତି ତା'ଠାରୁ ବେଶି ସଂଖ୍ୟାରେ ରହିଛନ୍ତି ଜେଲଖାନା ଗୁଡ଼ିକରେ। ଆମ ଦେଶରେ ମାଦକାଶକ୍ତି ଓ ଅପରାଧ ଅଧ୍ୟୁଷିତ ଯେଉଁ ଅଞ୍ଚଳଗୁଡ଼ିକ ଅଛି ସେଠାରେ ଆଶା ଓ ଭବିଷ୍ୟତ ଏହି ଶବ୍ଦ ଦୁଇଟି କେବେ ହେଲେ ଶୁଣାଯାଏ ନାହିଁ।

ଧନତନ୍ତ୍ରର ସଙ୍କଟ ପ୍ରକାଶିତ ହୁଏ ଏହିପରି ସାଙ୍କେତିକ ପଦଗୁଡ଼ିକରେ ଯଥା "ପକ୍ଷପାତ ମୂଳକ ଅପରାଧ-ମାନେ କର୍ଣ୍ଣେଲ ଜାତ ଦଙ୍ଗା" "ଧାରାବାହିକ ହତ୍ୟାକାରୀ" ମାନେ ଆଫ୍ରିକାନ୍, ଆମେରିକାନ ଓ ସ୍ତ୍ରୀ ଲୋକମାନଙ୍କୁ ଗଣହତ୍ୟାକାରୀ।

ଧନତନ୍ତ୍ରର ସଙ୍କଟ ହେଉଛି—"ହତାଶା, ନିରାଶା ଏବଂ ଦାରିଦ୍ର୍ୟ ମଧ୍ୟରେ ଯାହା ଧନତନ୍ତ୍ର ଜନ୍ମ ଦିଏ।"

—ଦରିଦ୍ର, ବୟସ୍କ ମଣିଙ୍କ ମଧ୍ୟରେ ଅତି ନିକୃଷ୍ଟ ଖାଦ୍ୟ ବଣ୍ଟନ କରିବା।

—ବୁଶ୍ ବେକର ଲୋକମାନଙ୍କର ସୁବିଧା ବୃଦ୍ଧି ପାଇଁ ଆଇନରେ ଦସ୍ତଖତ କରନ୍ତି। କିନ୍ତୁ ଏହାକୁ ଜରୁରୀ ବୋଲି ଘୋଷଣା କରିବା ପାଇଁ ଅସ୍ୱୀକାର କରନ୍ତି। ଏବଂ ଏଥିପାଇଁ ଟଙ୍କା ବରାଦ କରନ୍ତି ନାହିଁ। ନାଗରିକ ଅଧିକାର ଆଇନ ବିରୋଧରେ ବୁଶ୍ ଭେଟୋ କରନ୍ତି।

—ନିରାପତ୍ତା ବ୍ୟବସ୍ଥା ଉଠାଇ ନେବା ପାଇଁ ଉତ୍ତର କାରୋଲିନାରେ ପଚିଶ ଜଣ ପୋଲଟ୍ରି ଶ୍ରମିକ ନିହତ ହେଲେ।

—ଆହତ ଓ ଅସୁସ୍ଥମାନଙ୍କୁ ଡାକ୍ତରଖାନାର ଜରୁରୀ ଚିକିତ୍ସା ଘରୁ ବାହାର କରି ଦିଆଯାଏ ।

—ଚାରି କୋଟି କୋଡ଼ିଏ ଲକ୍ଷ ଆମେରିକାବାସୀଙ୍କ ସ୍ୱାସ୍ଥ୍ୟ ବିଷୟରେ କୌଣସି ବ୍ୟବସ୍ଥା ନାହିଁ ।

—ବେପରୁଆ ଭାବେ ଡାକ୍ତରଖାନା, ସ୍କୁଲ, ପାର୍କ ପ୍ରଭୃତି ବନ୍ଦ କରି ଦିଆଯାଏ ।

—ଉପରୁ ତଳ ପର୍ଯ୍ୟନ୍ତ ସୀମାହୀନ ଦୁର୍ନୀତି ଓ କର୍ମକର୍ତ୍ତାମାନଙ୍କର ଅପରାଧ ବୃଦ୍ଧି ।

—ଧନତନ୍ତ୍ରର ଆଉ କିଛି ଦେବାକୁ ନାହିଁ । ତାହା ବର୍ତ୍ତମାନ ଅଚଳ, ଇତିହାସ ଠାରୁ ଏହା ଏକ ପଛରେ ପଡ଼ିଯିବା ବ୍ୟବସ୍ଥା । ଏହି ପ୍ରକାରର ସମାଜ ବ୍ୟବସ୍ଥା ବ୍ୟାପକ ଜନଗଣଙ୍କ ପାଇଁ ଆଉ କିଛି କରିପାରେ ନାହିଁ ।

—ଆମେ କମ୍ୟୁନିଷ୍ଟମାନେ ବିଶ୍ୱାସ କରୁ ଯେ, ସମାଜତନ୍ତ୍ର ହେଉଛି ଏହାଠାରୁ ଅନେକ ବେଶୀ କଲ୍ୟାଣ ଜନକ ।

## ସମାଜତନ୍ତ୍ରର ସଙ୍କଟ ଅବଶ୍ୟମ୍ଭାବୀ ନୁହେଁ :

ସମାଜତନ୍ତ୍ରର ସଙ୍କଟ ନିୟମାନୁବର୍ତ୍ତୀ ବା ଅବଶ୍ୟମ୍ଭାବୀ ନୁହେଁ । ସୋଭିଏତ୍ ୟୁନିଅନରେ ଏହି ସଙ୍କଟ ସୃଷ୍ଟି ହେବାର କୌଣସି ପ୍ରୟୋଜନ ନ ଥିଲା । ଏ ଗୁଡ଼ିକ ସମାଜତାନ୍ତ୍ରିକ ସରକାରର ଭୁଲ ଏବଂ ଭ୍ରାନ୍ତ ନୀତିର ଫଳ । ଭୁଲ ତତ୍ତ୍ୱଗତ ଏବଂ ଆଦର୍ଶଗତ ଭୁଲ ସହ ଅନ୍ୟାନ୍ୟ ସମସ୍ତ ଭୁଲ ଜଡ଼ିତ । ଅନେକେ କହିପାରନ୍ତି ଅଧିକାଂଶ କ୍ଷେତ୍ରରେ ଏ ଗୁଡ଼ିକ ହେଉଛି କମ୍ୟୁନିଷ୍ଟ ନେତାମାନଙ୍କର ଭୁଲ ।

ମୁଁ କହୁଛି ଏ ଗୁଡ଼ିକ ମନୁଷ୍ୟ ସୃଷ୍ଟି ପ୍ରମାଦ । ଭାରତର କମ୍ୟୁନିଷ୍ଟ ପାର୍ଟି କହୁଛି "ଖରାପ ପରିଚାଳନା" କାରଣ ଯୋଗୁଁ ଏହି ଭୁଲ୍ ହୋଇଛି । ମଣିଷର ତ୍ରୁଟି, ଭୁଲ୍ ଅଥବା ଖରାପ ପରିଚାଳନା ପ୍ରଭୃତି ଯାହା କୁହାଯାଉ ପଛେ ସେଗୁଡ଼ିକୁ ହେଉଛି ଭୁଲ୍ ନୀତିର ଫଳ । ସମାଜତାନ୍ତ୍ରିକ ବ୍ୟବସ୍ଥାର ମୂଳତତ୍ତ୍ୱରୁ ଏହି ଭୁଲ ଆସେ ନାହିଁ । ସମାଜତନ୍ତ୍ରରେ ଏପରି କୌଣସି ଭୁଲ ନାହିଁ ଯାହା ଭଲ ସମାଜତାନ୍ତ୍ରିକ ବ୍ୟବସ୍ଥାପନା ଏବଂ ବିଚକ୍ଷଣ ସମାଜତାନ୍ତ୍ରିକ ନୀତି ଦ୍ୱାରା ହୋଇ ନ ପାରିବ ।

ପ୍ରାୟ ପାଞ୍ଚ ବର୍ଷ ଆଗରୁ ଗୋର୍ବାଚୋଭ ନେତୃତ୍ୱ କେତେ ଗୁଡ଼ିଏ ବେହିସାବୀ ଭୁଲ କରିବାକୁ ଆରମ୍ଭ କଲେ । ସେମାନେ ସିଦ୍ଧାନ୍ତ କଲେ ଯେ ସୋଭିଏତ୍ ୟୁନିଅନର ଜନଗଣ ସମାଜତନ୍ତ୍ର ପାଇଁ ଆଉ ଉପଯୁକ୍ତ ନୁହଁନ୍ତି । ବ୍ୟକ୍ତିର ଉନ୍ନତି ଲାଗି ସମସ୍ତଙ୍କ ମଙ୍ଗଳ ପାଇଁ କାମ କରିବା, ସମଗ୍ର ସମାଜତାନ୍ତ୍ରିକ ଶିବିରର କଲ୍ୟାଣ ପାଇଁ କାମ କରିବା ଇତ୍ୟାଦି ସମାଜତାନ୍ତ୍ରିକ ନୀତିରେ ସେମାନଙ୍କୁ ଆଉ ଅନୁପ୍ରାଣିତ କରାଯାଇପାରିବ ନାହିଁ । ଏହା ଗୋଟିଏ ଭୁଲ୍ ବିଚାର । ସୋଭିଏତ୍ ଜନଗଣଙ୍କୁ ବିଶେଷ କରି ଶ୍ରମିକଶ୍ରେଣୀଙ୍କୁ ଏହାଦ୍ୱାରା ଅବମୂଲ୍ୟାୟନ କରାଗଲା ।

ସମାଜତନ୍ତ୍ର ପାଇଁ ଜନଗଣଙ୍କୁ ସମବେତ କରିବା ପରିବର୍ତ୍ତେ ସେମାନେ ସମାଜତାନ୍ତ୍ରିକ ଗଠନଟାକୁ ହିଁ ଭାଙ୍ଗିବାକୁ ଆରମ୍ଭ କରି ବ୍ୟକ୍ତିଗତ ପୁଞ୍ଜିକୁ ଉତ୍ସାହ ପ୍ରଦାନକାରୀ ଗଠନ ବ୍ୟବସ୍ଥାରେ ପରିବର୍ତ୍ତିତ କଲେ ।

ସେମାନେ ଏପରି ପଦକ୍ଷେପମାନ ନେଲେ ଯାହା ସାମାଜିକ ଏବଂ ଯୌଥ ମାଲିକାନା ପରିବର୍ତ୍ତେ ବେସରକାରୀ କରଣ ଓ ବ୍ୟକ୍ତିଗତ ମାଲିକାନା ଆଡ଼କୁ ନେଇଗଲେ । ତା' ପରେ ସେମାନେ ଯୌଥ ଓ ସାମାଜିକ ମାଲିକାନା ଏବଂ ବ୍ୟକ୍ତିଗତ ଧନତାନ୍ତ୍ରିକ ମାଲିକାନାକୁ ଏକ କରି ଆଇନ୍ ପାଶ କଲେ । ସେମାନେ ଖୋଲା ବାଟରେ ଧନତାନ୍ତ୍ରିକ ଗଠନ ଧନତାନ୍ତ୍ରିକ ଭାବଧାରା ପ୍ରବେଶ କରାଇବା ଆରମ୍ଭ କଲେ । "ବେସରକାରୀ କରଣ" ହେଉଛି ପୁଞ୍ଜିବାଦର ବିଶେଷ ସାଙ୍କେତିକ ନାମ ।

ତା'ପରେ ସେମାନେ ଏହାଠାରୁ ବଡ଼ ଭୁଲ୍ କଲେ ଯେତେବେଳେ ସେମାନେ ଏହି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ସିଦ୍ଧାନ୍ତ ନେଲେ । ସେମାନେ ଗୋଟିଏ ତାରିଖ ନିର୍ଦ୍ଦିଷ୍ଟ କରିଦେଲେ ଯେଉଁ ଦିନ ସବୁ କାରଖାନା ଓ ପ୍ରତିଷ୍ଠାନ ସେମାନଙ୍କ ବ୍ୟକ୍ତିଗତ ହୋଇଯିବ । କାରଖାନା ଏବଂ ଶିଳ୍ପ ପ୍ରକଳ୍ପ ଗୁଡ଼ିକ ଯୋଜନା ବିହୀନ ହୋଇ ଏବଂ ପରସ୍ପର ମଧ୍ୟରେ ସଂଯୋଗ ହରାଇ ଏକ ଶୂନ୍ୟ ଅବସ୍ଥାରେ ପଡ଼ିଗଲା ।

କାରଖାନା ସହିତ କାରଖାନାର ଏବଂ କାରଖାନା ସହିତ କୃଷି ଖମାରର ସମ୍ପର୍କ ଛିନ୍ନ କରି ଦିଆଗଲା । ହଜାର ହଜାର କାରଖାନାର ଦରଜା ବନ୍ଦ ହୋଇଗଲା । ଏକ ନୂତନ ରୂପ ନେବା (Structure) ପୂର୍ବରୁ ସେ ଗୁଡ଼ିକର ପୁରୁଣା ରୂପ ଧ୍ୱଂସ କରିଦିଆଗଲା । ଫଳରେ ଅରାଜକତା, ବିଶୃଙ୍ଖଳା ଏବଂ ଧ୍ୱଂସମୁଖୀ ପରିସ୍ଥିତି ସୃଷ୍ଟି ହେଲା । ଏଇଟା ହିଁ ହେଉଛି ଖରାପ ପରିଚାଳନା । ପୁଞ୍ଜିବାଦର ଧାନ ଧାରଣାକୁ ନେଇ ସମାଜବାଦକୁ ପରିଚାଳିତ କରାଯାଇପାରେନା ।

ସବୁ ଅଦ୍ଭୁତ ମହଲରୁ ଏହାର ସାକ୍ଷ୍ୟ ମିଳିଲା । ଲେନିନ୍ ଗ୍ରାଦର ମେୟର ଅଭିଯୋଗ କଲେ ଯେ—"ଦେଶ ବାସ୍ତବରେ ଆଜି ନିୟନ୍ତ୍ରଣର ବାହାରକୁ ଚାଲିଯାଇଛି" କାରଣ

ପୁରୁଣା ରୂପ ଧ୍ୱଂସ ହୋଇଯାଇଛି ଏବଂ ନୂତନ କିଛିର ଉଦ୍‌ଭବ ହୋଇନାହିଁ ।" ଏଲ୍‌ତସିନଙ୍କର ଜଣେ ପ୍ରଧାନ ଉପଦେଷ୍ଟା ଏଠାକୁ ଆସି ଟି.ଭି.ର ଜାତୀୟ ଭାଷଣରେ କହିଛନ୍ତି "ଆପଣମାନଙ୍କ ପରି ଆମରି ମଧ୍ୟ ପୁଞ୍ଜିବାଦ, କିନ୍ତୁ ଆମେ ଏହାକୁ ପୁଞ୍ଜିବାଦ ବୋଲି କହିପାରିବୁ ନାହିଁ । କାରଣ ସୋଭିଏତ୍ ଜନଗଣ ତାହା ବରଦାସ୍ତ କରିବେ ନାହିଁ ।"

ଏହା ଠିକ୍ ଯେ, ବିକେନ୍ଦ୍ରୀକରଣର ପ୍ରୟୋଜନ ଥିଲା । କିନ୍ତୁ ତାହା ପରିକଳ୍ପିତ ସଂଗଠିତ ଭାବରେ କରିବା ଉଚିତ ଥିଲା । ସୋଭିଏତ୍ ବ୍ୟବସ୍ଥାରେ ସେପରି ବିକେନ୍ଦ୍ରୀକରଣ ଦରକାର ଥିଲା । ଯାହାର ସମାଜବାଦ ଭଲଭାବରେ କାମକରି ପାରିବ । ସୋଭିଏତ୍ ବ୍ୟବସ୍ଥାର ପ୍ରୟୋଜନ ଥିଲା ଜନଗଣ ସବୁ କିଛିର ମାଲିକ । ଏହି ସମାଜବାଦୀ ବାସ୍ତବତା ସଙ୍ଗେ ସଙ୍ଗତି ରଖି ଗଣତନ୍ତ୍ରର ବିକାଶ ସାଧନ, ଅଧିକାର, ସୁଯୋଗ ସୁବିଧା ଓ ଦାୟିତ୍ୱ ବୋଧ ମଧ୍ୟରେ ଉନ୍ନତ ଧରଣର ଭାରସାମ୍ୟ ଭିତ୍ତିରେ ଗଣତନ୍ତ୍ରକୁ ବିସ୍ତୃତ କରିବାର ଆବଶ୍ୟକ ଥିଲା ।

ସୋଭିଏତ୍ ବ୍ୟବସ୍ଥାରେ ସାମଗ୍ରିକ ଭାବେ ପୁନର୍ଗଠନ ଓ ପୁନର୍ନବୀକରଣର ଆବଶ୍ୟକ ଥିଲା । ଏହାର ପ୍ରୟୋଜନ ଥିଲା ଆହୁରି ସମାଜବାଦ ଆହୁରି ଗଣତନ୍ତ୍ର । ଏହାର ପୁଞ୍ଜିବାଦର ପ୍ରୟୋଜନ ନଥିଲା । ପୁଞ୍ଜିବାଦ ହେଉଛି ଏକ ଅସ୍ୱୀକୃତ ଧାରଣା ।

ଏହାର ଗତି ଏବେ ପଶ୍ଚାତମୁଖୀ । ତାର ସବୁକିଛି ଦୁର୍ବଳତା ସତ୍ତ୍ୱେ ମଧ୍ୟ ପୁରୁଣା ଅର୍ଥନୈତିକ ଗଠନ ଥିଲା ସେହି ଭିତ୍ତି, ଯାହା ଉପରେ ସୋଭିଏତ୍ ୟୁନିଅନରେ ପ୍ରତିବର୍ଷ ଆୟୋଜନ ବୃଦ୍ଧି ପାଇଛି, ଏପରି କି ବ୍ରେଜନଭଙ୍କ ନେତୃତ୍ୱର ତଥାକଥିତ ଓ ବନ୍ଧ୍ୟା ଯୁଗରେ ମଧ୍ୟ ।

ତା'ପରେ ପେରେସ୍ତ୍ରଇକାର "ବେସରକାରୀ ମାଲିକାନା" ଅମଳରେ ଉତ୍ପାଦନ କ୍ରମାଗତ କମିବାକୁ ଲାଗିଲା ଏବଂ ଏବର୍ଷ ଦୁଇଓ ପଚିଶ ଶତାଂଶ ହେବ ।

କେଉଁମାନେ ଏହି ଧ୍ୱଂସ ଏବଂ ବିଶୃଙ୍ଖଳା ଆଡ଼କୁ ଠେଲି ଦେଲେ ? ସେମାନେ ହେଲେ—ଗୋର୍ବାଚେଭ, ଇୟାକୋଭଲେଭ, ଶେଭାରନେଦ, ଇଏଲତ୍‌ସିନ ଏବଂ ଦକ୍ଷିଣ ପନ୍ଥୀ ଏକାଡେମୀସିଆନ, ଲେଖକ, ଐତିହାସିକଗଣ ଏବଂ ହାର୍ଭାର୍ଡ ବିଶ୍ୱବିଦ୍ୟାଳୟରେ ଶିକ୍ଷିତ ଅର୍ଥନୀତିବିଦ୍‌ଗଣ ଯେଉଁମାନଙ୍କର ସମାଜତାନ୍ତ୍ରିକ କିପରି ଭାବେ ସଂଗଠିତ କରିବାକୁ ହେବ ସେ ସମ୍ପର୍କରେ ବିନ୍ଦୁମାତ୍ର ଧାରଣା ନାହିଁ ।

## ଗୋର୍ବାଚେଭଙ୍କର ବିଶେଷ ଭୂମିକା :

ଏହି ସବୁ ଘଟଣାବଳୀରେ ଗୋର୍ବାଚେଭ ଗୋଟିଏ ବିଶେଷ ଭୂମିକା ପାଳନ କରିଛନ୍ତି ।

(Coup)ର ଚେଷ୍ଟା ପରେ ମସ୍କୋ ଫେରି ତାଙ୍କର ପ୍ରଥମ କାମ କ'ଣ ହେଲା ? ସେ ରୁଷ ସଂସଦ ସମୟରେ ହାଜର ହୋଇ ଇୟେଲତ୍‌ସିନଙ୍କର ଉକ୍ତିଗୁଡ଼ିକୁ—ଯାହା ମଧ୍ୟରେ ଥିଲା କାରଖାନା ଏବଂ ମିଲଗୁଡ଼ିକରେ କମ୍ୟୁନିଷ୍ଟ ପାର୍ଟିକୁ ନିଷିଦ୍ଧ କରିବା, ମସ୍କୋ କେନ୍ଦ୍ରୀୟ କମିଟିର ଭବନ ସହ ପାର୍ଟିର ଅଫିସ ଭବନଗୁଡ଼ିକୁ ତାଲାବନ୍ଦ କରିବା ପ୍ରକାଶ୍ୟରେ ସମର୍ଥନ କଲେ ।

ସେ ପ୍ରାଭଦା ସହ ସାତଟି କମ୍ୟୁନିଷ୍ଟ ପାର୍ଟିର ପତ୍ରିକାକୁ ବନ୍ଦ କରିବାକୁ ଅନୁମୋଦନ କଲେ ।

ସେ ପାର୍ଟିର ସମ୍ପତ୍ତି, ଫାଇଲ ଓ ଦଲିଲଗୁଡ଼ିକୁ ବାଜ୍ୟାପ୍ତି କରିବା ପରିକଳ୍ପନାକୁ ସମର୍ଥନ କଲେ ।

କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ପ୍ରମାଣ ସଂଗ୍ରହ ପାଇଁ ସେ ସେମାନଙ୍କର ଘର ଗୁଡ଼ିକୁ ବେଆଇନ ଭାବରେ ଅନୁସନ୍ଧାନ କରିବା ପ୍ରଭୃତି କାର୍ଯ୍ୟକ୍ରମକୁ ଆଗେଇ ନେଇ ଗଲେ ।

ସେ କମ୍ୟୁନିଷ୍ଟମାନଙ୍କ ଉପରେ ନିର୍ଯ୍ୟାତନାର ମୃଦୁ ପ୍ରତିବାଦ କଲେ କିନ୍ତୁ ନିର୍ଯ୍ୟାତନାର ସମସ୍ତ ବ୍ୟବସ୍ଥାକୁ ଅନୁମୋଦନ କଲେ ।

ଅନଧିକାର ଭାବେ ସୋଭିଏତ୍ ଏବଂ ପାର୍ଟିର ସମ୍ବିଧାନକୁ ଲଙ୍ଘନ କରି ସେ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି ତଥା ପାର୍ଟିର ସଂପାଦକ ମଣ୍ଡଳୀ ଭାଙ୍ଗିଦେଲେ ଏବଂ ପାର୍ଟିର ସମସ୍ତ ସଂପତ୍ତି ବାଜ୍ୟାପ୍ତ କରିବା ପାଇଁ ଆଦେଶ ଦେଲେ । ତା'ପରେ ସେ କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ ନିର୍ଯ୍ୟାତନ—ଯାହା ମଧ୍ୟରେ ଅଛି ପ୍ରୟୋଜନ ହେଲେ ବିଚାରକ୍ରମରେ କମ୍ୟୁନିଷ୍ଟମାନଙ୍କୁ ଗିରଫ କରିବା ପ୍ରକାଶ୍ୟରେ ଅନୁମୋଦନ କଲେ । କମ୍ୟୁନିଷ୍ଟ ପାର୍ଟିକୁ ଚିରକାଳ ପାଇଁ ନିଶ୍ଚିହ୍ନ କରିବା, ଧ୍ୱଂସ କରିବା ପାଇଁ ଏହା ଏକ ସର୍ବାଧିକ ପ୍ରଚେଷ୍ଟା ଛଡ଼ା ଅନ୍ୟ କିଛି ନୁହେଁ । ଏହି ସବୁ ଧ୍ୱଂସ କରିବା ପରେ ପ୍ରକୃତ ଗୋର୍ବାଚେଭୀୟ ଢଙ୍ଗରେ ସେ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସଂପାଦକ ପଦରୁ ଇସ୍ତଫା ଦେଲେ ।

ଏ ସବୁ କାମ ମଧ୍ୟରେ କେଉଁଠି ବା ରହିଲା ସତତା, କେଉଁଠି ବା ରହିଲା ପ୍ରାଥମିକ ଶୋଭନତା ?

ଏହା ପରେ ଏଲତ୍‌ସିନଙ୍କ ସହ ମିଶି ସେ ଗଣତାନ୍ତ୍ରିକ ଭାବେ ନିର୍ବାଚିତ ସରକାରୀ ସଂସ୍ଥାଗୁଡ଼ିକୁ ଯଥା ସୁପ୍ରୀମ

ସୋଭିଏତ୍ ଏବଂ କଂଗ୍ରେସ ଅଫ୍ ପିପ୍‌ଲସ ଡେପୁଟିଜ୍‌କୁ ଭାଙ୍ଗି ଦେବାରେ କ୍ଷମ ହେଲେ ।

ସୁ-ଚତୁର କୌଶଳ ପ୍ରୟୋଗ ତଥା ଧନ୍ଦାବାଜି କରି ଜୋର ଖଟାଇ ଏବଂ ଘୁଷ ଦେଇ ଗୋର୍ବାଚେଭ ଏବଂ ଇୟେଲତ୍‌ସିନ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ—ଶ୍ରମିକ ଶ୍ରେଣୀର ରାଷ୍ଟ୍ରର ଗଣତାନ୍ତ୍ରିକ ଭାବେ ନିର୍ବାଚିତ ସରକାରର ହାତରୁ କ୍ଷମତା ଛଡ଼ାଇ ନେବାରେ ସକ୍ଷମ ହେଲେ ଏବଂ କେବଳ ଆଇନ ଜାରି କରି ଶାସନ କରିବା ପାଇଁ ଜରୁରୀ କ୍ଷମତା ସମ୍ପନ୍ନ ଗୋଟିଏ ଅନିର୍ବାଚିତ ସରକାର ପ୍ରତିଷ୍ଠା କଲେ ।

ଏହି ଭାବରେ ବେଆଇନ ବ୍ୟର୍ଥ 'କ୍ୟୁ'କୁ ବ୍ୟବହାର କରାଗଲା ଗୋଟିଏ ଢାଲ ହିସାବରେ, ଗୋଟିଏ ଆଳ ହିସାବରେ ଯାହା ଫଳରେ ଗୋର୍ବାଚେଭ ଆଉ ଗୋଟିଏ 'କ୍ୟୁ' କରିବା ପାଇଁ ସକ୍ଷମ ହେଲେ । ଏଲତ୍‌ସିନ ଗୋର୍ବାଚେଭଙ୍କର କମ୍ୟୁନିଷ୍ଟ ବିରୋଧୀ ଅଭିଯାନର ଲକ୍ଷ୍ୟ ସହିତ ବ୍ୟର୍ଥ କ୍ୟୁର କୌଣସି ସମ୍ପର୍କ ନାହିଁ । ସେମାନେ କେବଳ ଏହାକୁ ବ୍ୟବହାର କରିଥିଲେ ।

ଏହାର ଉଦ୍ଦେଶ୍ୟ ଥିଲା ତଥାକଥିତ ଏକ ନୂତନ ଧରଣର ୟୁନିଅନ ଚୁକ୍ତି ଆଡ଼କୁ ଠେଲି ନେବା ଯାହା କାର୍ଯ୍ୟତଃ ସୋଭିଏତ୍ ୟୁନିଅନକୁ ଭାଙ୍ଗିଦେବ । ଉଦ୍ଦେଶ୍ୟ ଥିଲା—ଶୈଘ୍ର ପଥରେ ପୁଞ୍ଜିବାଦ ଆମଦାନୀ କରିବା ପରିକଳ୍ପନାରେ ବାଧା ସୃଷ୍ଟି କରୁଥିବା କମ୍ୟୁନିଷ୍ଟ ପାର୍ଟିକୁ ରାସ୍ତାରୁ ହଟାଇ ଦେବ ଏବଂ ଶ୍ରମିକ ଶ୍ରେଣୀର କ୍ଷମତାରେ ପ୍ରତିଷ୍ଠିତ ନିର୍ବାଚିତ ସରକାରକୁ ହଟାଇ ସେମାନଙ୍କର ସ୍ୱ-ନିୟୋଜିତ ସରକାର ପ୍ରତିଷ୍ଠା କରିବାକୁ ମାନେ ହିଁ ବେଆଇନ, ଅସାମ୍ବିଧାନିକ ଓ ଅଗଣତାନ୍ତ୍ରିକ । ଗୋର୍ବାଚେଭ ଓ ଏଲତ୍‌ସିନଙ୍କ ଏହା ସଫଳ ହେଲା ଏବଂ ବର୍ତ୍ତମାନ କମ୍ୟୁନିଷ୍ଟମାନଙ୍କ ନିର୍ଯ୍ୟାତନାରେ ରତ—ତାହା ମଧ୍ୟ ସମାନ ଭାବରେ ବେଆଇନ, ସମାନ ଭାବରେ ଅସମ୍ବିଧାନିକ ଓ ସମାନ ଭାବରେ ଅଗଣତାନ୍ତ୍ରିକ ।

ସମାଜତାନ୍ତ୍ରିକ, ଅର୍ଥନୈତିକ ଗଢ଼ଣ ଭାଙ୍ଗିବା ସଙ୍ଗେ ସଙ୍ଗେ ଆରମ୍ଭ ହେଲା ରାଜନୈତିକ ଓ ଅର୍ଥନୈତିକ ଗଢ଼ଣ ଭାଙ୍ଗି ପଡ଼ିବା । ସମାଜବାଦୀ ବିରୋଧି, ପୁଞ୍ଜିବାଦର ସମର୍ଥକ ଶକ୍ତିମାନେ କର୍ତ୍ତୃତ୍ୱ ଦଖଲ କଲେ । ଆଦର୍ଶଗତ କ୍ଷେତ୍ରରେ ସେମାନେ ଗୁରୁତର କ୍ଷତି କଲେ । ମାର୍କସବାଦୀ ଲେନିନ୍‌ବାଦୀ ଧାରାରୁ ଆଦର୍ଶ ବିଚ୍ୟୁତ ହେଲା ।

ଅତୀତ କେତେ ବର୍ଷର ଶବ୍ଦ ନିର୍ବାଚନର ତଫାତକୁ ଲକ୍ଷ କଲେ ଜଣାଯାଏ ଯେ ଗୋର୍ବାଚେଭ ତାଙ୍କ ମୌଳିକ ସ୍ଥିତିରୁ ଅପସରି ଯାଇଛନ୍ତି । ସାମ୍ରାଜ୍ୟବାଦ, ଉପନିବେଶବାଦ, ପୁଞ୍ଜିବାଦ, ଉଗ୍ରଜାତୀୟତାବାଦ, ଫ୍ୟାସିବାଦ, ଶ୍ରେଣୀ ସଂଗ୍ରାମ, ଶ୍ରମିକ ଶ୍ରେଣୀର ଆନ୍ତର୍ଜାତିକତା ଏବଂ ସାମ୍ୟବାଦ ପ୍ରଭୃତି ଶବ୍ଦ ତାଙ୍କ ଭାଷଣରେ ସ୍ଥାନ ପାଇଲା ନାହିଁ । ସମାଜବାଦ ଶବ୍ଦଟି ମଧ୍ୟ ସେ ବହୁତ କ୍ୱଚିତ୍ ବ୍ୟବହାର କଲେ ।

ଏହି ସବୁ ଶବ୍ଦ ବଦଳରେ ଆସିଲା "ସାମଗ୍ରିକ ଐକ୍ୟ, ସାଦୃଶ୍ୟର ବାସ୍ତବତା, ସୀମାହୀନ ସହଯୋଗିତା, ଶ୍ରେଣୀସ୍ୱାର୍ଥ ନୁହେଁ ମାନବିକ ସ୍ୱାର୍ଥ, ବେସରକାରୀକରଣ" ପ୍ରଭୃତି । ଗୋର୍ବାଚେଭ ଏକାଧିବାର କହିଛନ୍ତି, "ଆମର ଲକ୍ଷ୍ୟ ହେଉଛି ଗୋଟିଏ ମିଶ୍ର ବହୁମୁଖୀ ଅର୍ଥନୀତି ଯେଉଁଥିରେ ସବୁ ପ୍ରକାରର ସମ୍ପତ୍ତି ମାଲିକାନା ସ୍ୱାଧୀନ ଭାବରେ ବିକଶିତ ହୋଇପାରିବ ।"

ଏହି ଶବ୍ଦ ଗୁଡ଼ିକ ଏବଂ ଯେଉଁ ପରିପ୍ରେକ୍ଷୀରେ ଏଗୁଡ଼ିକ ବ୍ୟବହାର କରାଯାଇଛି ସେଥିରେ ନୀତି ଗୁଡ଼ିକର ମୂଳ ଲକ୍ଷ୍ୟ ପ୍ରତିଫଳିତ ହୁଏ । ପାଞ୍ଚବର୍ଷ ଆଗରୁ ହିଁ ମୁଁ କହିଛି, ବାରମ୍ବାର କହିଛି ଯେ ପେରେସ୍ତ୍ରୋଇକା ଗ୍ଲାସନସ୍ତ ସମ୍ପର୍କରେ ଆମର କୌଣସି ବଡ଼ ସମସ୍ୟା ନାହିଁ, କିନ୍ତୁ ସୋଭିଏତ୍ ନୀତିର ସାମଗ୍ରିକ ଗତି ମୁଖ ବିଷୟରେ ଆମର ପ୍ରଶ୍ନ ଅଛି ।

## ମାର୍କିନ ଫାସିଷ୍ଟମାନଙ୍କ ସହ ଏଲତ୍‌ସିନଙ୍କର ଯୋଗାଯୋଗ ଥିଲା :

ବର୍ଷ ପରେ ବର୍ଷ ସମ୍ମିଳନୀ ଗୁଡ଼ିକରେ, କଂଗ୍ରେସମାନଙ୍କରେ ସରକାରୀ ସଂସ୍ଥାର ମିଟିଙ୍ଗ୍‌ମାନଙ୍କରେ ଶ୍ରମିକ ଏବଂ କୃଷକଙ୍କ ସଂଖ୍ୟା ଗୁରୁତର ଭାବେ କମି କମି ଆସିଲା । ତା'ସହିତ ସମାଜତନ୍ତ୍ର ବିରୋଧୀ, ଧନତନ୍ତ୍ରର ସମର୍ଥକ ଶକ୍ତି ଗୁଡ଼ିକ କ୍ଷମତା ଦଖଲ କରିବାରେ ସକ୍ଷମ ହେଲେ ।

ପାଞ୍ଚବର୍ଷ ବ୍ୟାପି ଗୋର୍ବାଚେଭ ଏବଂ ତାଙ୍କ ଚତୁଃପାର୍ଶ୍ୱର ତାତ୍ତ୍ୱିକମାନେ ସୋଭିଏତ୍ ୟୁନିଅନର ସମଗ୍ର ଇତିହାସ ବିରୁଦ୍ଧରେ, ସମାଜତନ୍ତ୍ର ଏବଂ କମ୍ୟୁନିଷ୍ଟ ପାର୍ଟି ବିରୁଦ୍ଧରେ ନିନ୍ଦା ଓ କୁତ୍ସାରଟନା କରୁଥିଲେ । ଏହା କୌଣସି ସମାଲୋଚନା ନଥିଲା, ଥିଲା କୁତ୍ସା ।

ପାଞ୍ଚବର୍ଷ ହେଲା କେହି ସମାଜତନ୍ତ୍ର, ତାହାର ଇତିହାସ, ତା'ର ସାଫଲ୍ୟ, ତାହାର ନିଜକୁ ରକ୍ଷା କରିବାର ଅଧିକାର ଏବଂ ସମାଜତାନ୍ତ୍ରିକ ବ୍ୟବସ୍ଥାକୁ ରକ୍ଷା କରିବାର ଅଧିକାର ଏବଂ ସମାଜତାନ୍ତ୍ରିକ ବ୍ୟବସ୍ଥାକୁ ରକ୍ଷା କରିବା ସପକ୍ଷରେ କହି ନାହାନ୍ତି । ସମାଜତାନ୍ତ୍ରିକ ବ୍ୟବସ୍ଥା ଏବଂ କମ୍ୟୁନିଷ୍ଟ ପାର୍ଟି ବିରୁଦ୍ଧରେ କୁତ୍ସା ଏବଂ ଅପବାଦର ଜବାବ ଦିଆଗଲା ନାହିଁ । ନେତୃତ୍ୱର ଅତି ସାମାନ୍ୟ ଅଂଶ ମାତ୍ର

ସମାଜତନ୍ତ୍ର ପକ୍ଷରେ କହୁଥିଲେ । ସେହି ସମୟ ଠାରୁ ସଂଶୟ ଯେ ସୃଷ୍ଟି ହେଉଥିଲା, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ସମାଜତାନ୍ତ୍ରିକ ଭାବଧାରାକୁ ଧନତାନ୍ତ୍ରିକ ପ୍ରଚାରର ଉନ୍ମତ୍ତ ନଦୀର ସ୍ରୋତ ବିରୁଦ୍ଧରେ ପହଁରି ଯିବାକୁ ପଡ଼ୁଛି ।

ଆଦର୍ଶଗତ ଶିକ୍ଷାର ଅଭାବ, ଧନତାନ୍ତ୍ରିକ ପ୍ରଚାରର ବିରୁଦ୍ଧରେ ଆଦର୍ଶଗତ ଲଢ଼େଇର କମତି ଏବଂ ଗତ ପାଞ୍ଚ-ବର୍ଷ ଧରି ସମାଜତନ୍ତ୍ରର ପକ୍ଷ ସମର୍ଥନ କରାନଯିବା ପ୍ରଭୃତି ଘଟଣାବଳୀକୁ ଯଦି ଏକା ସାଙ୍ଗରେ ବିଚାର କରନ୍ତି, ତା'ହେଲେ ଆପଣମାନେ ଆଦର୍ଶଗତ ସଂଗ୍ରାମ ଯେ କେତେ ପରିମାଣରେ ଭାରସାମ୍ୟ ହରାଇ ବସିଥିଲା ତାହାର ଗୋଟିଏ ଚିତ୍ର ପାଇବାକୁ ଆରମ୍ଭ କରିବେ ।

ଉଦାହରଣ ସ୍ୱରୂପ, ଗତ ପାଞ୍ଚବର୍ଷ ଧରି ସୋଭିଏତ୍ ଗତ ପ୍ରଚାର ମାଧ୍ୟମ ଗୁଡ଼ିକୁ ବିଶ୍ୱର ସମସ୍ତ ସମାଜତନ୍ତ୍ର ବିରୋଧୀମାନଙ୍କ ପାଇଁ ଖୋଲି ଦିଆଗଲା । ପ୍ରତ୍ୟେକଟି ବଡ ସହରରେ ରେଡ଼ିଓ-ଫ୍ରି-ଇଉରୋପ ଏବଂ ରେଡ଼ିଓ ଲିବର୍ଟିର ଅଫିସ ଖୋଲା ହେଲା ଏବଂ ସେମାନେ ପ୍ରତିଦିନ ବେତାର-ତରଙ୍ଗ ବ୍ୟବହାର କରିବାକୁ ଲାଗିଲେ ।

ମାର୍କିନ ଯୁକ୍ତରାଷ୍ଟ୍ରର ସମସ୍ତ ଉଗ୍ର ଦକ୍ଷିଣପନ୍ଥୀ ଟି. ଭି. ପ୍ରଚାରକମାନେ, ଯେଉଁମାନେ କି ପ୍ରତାରଣାର ଅଭିଯୋଗରେ ଏ ପର୍ଯ୍ୟନ୍ତ ମଧ୍ୟ ଜେଲ୍‌କୁ ଯାଇନାହାନ୍ତି, ସେମାନେ ସମସ୍ତେ ସୋଭିଏତ୍ ୟୁନିଅନର ପ୍ରତ୍ୟେକ ବଡ଼ ସହର ମାନଙ୍କରେ ଯାଇ ଆସ୍ଥାନ ଜମାଇଲେ ।

ସୋଭିଏତ୍ ୟୁନିଅନର ସମସ୍ତ ପ୍ରତିଷ୍ଠାନରେ, ଶିକ୍ଷା ନିକେତନରେ ଏବଂ ସରକାରୀ ବିଭାଗରେ ସି. ଆଇ. ଏ.ର ଶିକ୍ଷିତ ପେଶାଦାର କମ୍ୟୁନିଷ୍ଟ ବିରୋଧୀମାନେ ଏବଂ ଫାସିଷ୍ଟ ଐତିହ୍ୟବାହୀ ସଂସ୍ଥା ଗୁଡ଼ିକର ଲୋକମାନେ ସ୍ୱାଧୀନ କର୍ତ୍ତୃତ୍ୱ ପାଇଲେ । ଯେପରି ଶ୍ରୀ ମୁନ୍ନୁନ୍ନୁ, ବ୍ରେଜିନ୍‌ସ୍କି ଏବଂ କିସିଙ୍ଗର୍‌ଙ୍କ ପରି ଲୋକମାନେ ପାର୍ଟି ଏବଂ କମ୍‌ସୋମଲର କର୍ମକର୍ତ୍ତାମାନଙ୍କୁ ଭାଷଣ ଦେବାକୁ ଲାଗିଲେ । ବେଶ୍ କିଛିଦିନ ପୂର୍ବରୁ ଅନେକ ଗୁଡ଼ିଏ ଦକ୍ଷିଣପନ୍ଥୀ, ଅଧା-ସାମରିକ ଏବଂ ଫାସିଷ୍ଟ ମାର୍କିନ ସଂଗଠନମାନଙ୍କ ସହିତ ୟେଲତସିନଙ୍କର ଘନିଷ୍ଠ ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ୟେଲତସିନ୍ ଏବଂ ସାକରଭକର୍ତ୍ତୃକ ସଂଗଠିତ ଋଷିଆର ଆନ୍ତଃ-ଆଞ୍ଚଳିକ ଗ୍ରୁପ୍‌ମାନଙ୍କ ସହ ଫ୍ରି-କଂଗ୍ରେସ-ଫାଉଣ୍ଡେସନ୍ ପରି ସଂଗଠନ ଗୁଡିକର ଯୋଗାଯୋଗ ଥିଲା । ଆନ୍ତଃ-ଆଞ୍ଚଳିକ ଗ୍ରୁପ୍ ଏବଂ ମାର୍କିନ୍ ଉଗ୍ର-ଦକ୍ଷିଣପନ୍ଥୀ ଓ ଫାସିଷ୍ଟ ଗ୍ରୁପ୍ ଗୁଡିକ ମିଶି ସୋଭିଏତ୍ ୟୁନିଅନର ବହୁ ଅଂଶରେ ପ୍ରଶିକ୍ଷଣ ସ୍କୁଲର ଘାଟୀଗଡ଼ି ତୋଳିଥିଲେ । ଏହି ପ୍ରଶିକ୍ଷଣ ମଧ୍ୟରେ ଥି କିପରି କ୍ଷମତା ଦଖଲ କରିବାକୁ ହେବ । ଏହି ଧରଣର ବି ଉଗ୍ର-ଦକ୍ଷିଣପନ୍ଥୀ ଓ ସମାଜତନ୍ତ୍ର ବିରୋଧୀ ସଂଗଠନ ତାଲିମପ୍ରାପ୍ତ କର୍ମଚାରୀଙ୍କ ସହ ଅଫିସ୍ ଥିଲା । ଏହିସ ଉଗ୍ର-ଦକ୍ଷିଣପନ୍ଥୀ ଏବଂ ଫାସିଷ୍ଟ ସଂଗଠନ ଗୁଡିକର କା ପ୍ରକାଶ୍ୟରେ ଚାଲିଥିଲା ଏବଂ ଗୋର୍ବାଚେଭ ନିଜେ ଏମାନଙ୍କର ଏକ ଭୋଜି ସଭାରେ ଭାଷଣ ଦେଇଥିଲେ ।

ଏହା ଏକ ନିଦାରୁଣ ପରିହାସ ଯେ, ଗୋର୍ବାଚେଭ ସବୁଠାରୁ ଉଚ୍ଚ ମର୍ଯ୍ୟାଦାର ପଦକ, "ହିରୋ ଅଫ୍ ଦି ସୋଭିଏତ୍ ୟୁନିଅନ (ସୋଭିଏତ୍ ଋଷର ବୀର", ୟେଲତସିନ୍‌ଙ୍କୁ ପ୍ରଦାନ କଲେ ଏବଂ ଋଷ ସମ୍ରାଟଙ୍କ ପ୍ରତିନିଧି ତାଙ୍କୁ ଗ୍ରାଣ୍ଡ୍ ପ୍ରିନ୍‌ସ ପଦବୀ ଦେଲେ । ପୁନର୍ଜନ୍ମ ଲାଭ କରି ଉଗ୍ର ଦକ୍ଷିଣପନ୍ଥୀ ସଂଗଠନ ଗୁଡିକ ସୋଭିଏତ୍‌ର ବଡ଼ ବଡ଼ ଅନାଥ ଶିଶୁମାନଙ୍କୁ ଲାଳନପାଳନ ପାଇଁ ପ୍ରତିଷ୍ଠାନ ଗୁଡ଼ିକୁ ନିଜର ମନୋମତ କରି ଏହି ସବୁ ଶିଶୁ-ମାନଙ୍କୁ ତିଆରି କରିବା ପାଇଁ ଦଖଲ କରି ନେବା ଆଶ୍ଚର୍ଯ୍ୟର କଥା ନୁହେଁ ।

ମାର୍କିନ ସେନାବାହିନୀ ସୋଭିଏତ୍ ସେନାବାହିନୀ ନିକଟକୁ ନିର୍ଦ୍ଦେଶ ପଠାଇଲେ କିଭଳି ସେମାନେ ସଶସ୍ତ୍ର ଶକ୍ତିକୁ "ଆହୁରି ମାନବିକ, ଆହୁରି ଗଣତାନ୍ତ୍ରିକ" କରିବାକୁ ହେବ, ବୁଲ୍‌ଡୋଜର ସାହାଯ୍ୟରେ ହଜାର ହଜାର ଜୀବନ୍ତ ଇରାକୀ ସେନାମାନଙ୍କୁ କବର ଦେଇ ସେମାନେ ଯେପରି କରିଥିଲେ ।

ଆହୁରି ବେଶୀ ପରିମାଣରେ ଛାତ୍ର ବିନିମୟ କର୍ମସୂଚୀ କାର୍ଯ୍ୟକାରୀ ହେବାକୁ ଲାଗିଲା । ସୋଭିଏତ୍ ଛାତ୍ରମାନେ ହାର୍ଭାର୍ଡ ଏବଂ ୟେଲ୍‌ଠାରେ ବର୍ଷ ବର୍ଷ ବ୍ୟାପି ଶିଖିବାକୁ ଲାଗିଲେ ଯେ, କିପରି ଭାବେ, "ଦୁଃସାହାସିକ" କାମ କରିବାକୁ ହେବ ।

ଯେଉଁ ସାତୋଟି ସମ୍ବାଦପତ୍ର ସମାଜବାଦ ପ୍ରଚାର କରନ୍ତି, ତାହା ସବୁ ବନ୍ଦକରି ଦିଆଗଲା ଏବଂ ଆମମାନଙ୍କ ସହ ସମସ୍ତ ବିଦେଶୀ କମ୍ୟୁନିଷ୍ଟ ସମ୍ବାଦପତ୍ର ନିଷିଦ୍ଧ କରାଗଲା । ତା'ସହିତ ସୋଭିଏତ୍ ୟୁନିଅନରେ ମାର୍କିନ ଯୁକ୍ତରାଷ୍ଟ୍ରର ଯୌନ ସାହିତ୍ୟ ଏବଂ ଘୃଣିତ ଉତ୍ତେଜନା ସୃଷ୍ଟିକାରୀ ପତ୍ର-ପତ୍ରିକା ସହ ସମସ୍ତ ବିଦେଶୀ ସମ୍ବାଦପତ୍ର ଲାଗି ଦରଜା ଖୋଲି ଦିଆଗଲା ।

ଆପଣମାନେ ଜାଣନ୍ତି ଆଜିକାଲି ଗଣତନ୍ତ୍ର ସମ୍ପର୍କରେ ଗଦା ଗଦା ତତ୍ତ୍ୱଗତ ଏବଂ ଭଣ୍ଡାମୀପୂର୍ଣ୍ଣ କଥାବାର୍ତ୍ତା ଚାଲିଛି । 'କ୍ୟୁ' ଥିଲା ଅସମ୍ବିଧାନିକ । କିନ୍ତୁ ଠିକ୍ ସେହି ପ୍ରକାର ବିଷୟ ହେଉଛି କମ୍ୟୁନିଷ୍ଟ ବିରୋଧୀ ହିଷ୍ଟିରିଆ, କମ୍ୟୁନିଷ୍ଟ-

ପାର୍ଟି ଓ ତା'ର ସମ୍ବାଦପତ୍ରକୁ ନିଷିଦ୍ଧ କରିବା । ପ୍ରକୃତରେ ଏହିପରି ଘଟଣାକୁ କୌଣସି ପ୍ରକାର ମଧ୍ୟ ସମର୍ଥନ କରାଯାଇ ପାରେନା । ଏକମାତ୍ର ବ୍ୟତିକ୍ରମ ହେଉଛି, 'କୁ' ଶେଷ ହୋଇଛି, କିନ୍ତୁ କମ୍ୟୁନିଷ୍ଟ ବିରୋଧୀ ଅଭିଯାନ ଚାଲୁ ରହିଛି ।

## ସମାତନ୍ତ୍ରର ଭବିଷ୍ୟତ କ'ଣ ?

ସମାଜତନ୍ତ୍ରର ଭବିଷ୍ୟତ କ'ଣ ? ଭୁଲ ଯେତେବେଳେ ନିୟମାଗତ ନୁହେଁ, ତାର କାରଣ ହେଲା ପରିଚାଳନାରେ ତ୍ରୁଟି, ସେତେବେଳେ ତାହାକୁ ସଂଶୋଧନ କରାଯାଇ ପାରିବ । ସମାଜତାନ୍ତ୍ରିକ ଦେଶର ପାର୍ଟିମାନେ ଏଥିରୁ ସଠିକ୍ ଶିକ୍ଷା ଗ୍ରହଣ କରିବେ ଏବଂ ସେମାନେ ତାହା ପ୍ରୟୋଗ କରିବେ । ସୁତରାଂ ଆମେ ଆଶ୍ୱସ୍ତ ହୋଇପାରୁ ଯେ, ସମାଜତନ୍ତ୍ର ଭଲ-ଭାବରେ ପରିଚାଳିତ ହେବ । ଏହା ଆହୁରି ଗଣତାନ୍ତ୍ରିକ ହେବ ।

ସୋଭିଏତ୍ ୟୁନିଅନରେ ଯାହାକୁ ମୁଁ "ପୁନର୍ଭ୍ୟୁଥାନ" ବୋଲି କହୁଛି ତାହାଦ୍ୱାରା କମ୍ୟୁନିଷ୍ଟମାନେ ନୂଆଁ କରି ସଂଗଠିତ ହେଉଛନ୍ତି, ସେହି ପ୍ରକ୍ରିୟା ଏବେ ଚାଲୁ ରହିଛି ।

ସମାଜତନ୍ତ୍ରକୁ ରକ୍ଷା କରିବା ଏବଂ ଚୋର ବାଟରେ ଧନତନ୍ତ୍ର ଆମଦାନୀ କରିବା ବିରୁଦ୍ଧରେ ସଂଗ୍ରାମ ଅଲଗା ଭାବେ ରିପବ୍ଲିକ୍ ଗୁଡ଼ିକରେ ଘଟିବ । ଏହା ଘଟିବ ଅନେକ ଗୁଡ଼ିଏ ଭିନ୍ନ ଭିନ୍ନ ସ୍ତରରେ ।

ପୂର୍ବ ୟୁରୋପର ପ୍ରାକ୍ତନ୍ ସମାଜତାନ୍ତ୍ରିକ ଦେଶ-ମାନଙ୍କରେ କ'ଣ ହେବ ? ସେଠାରେ କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ ଗଣ ପଟୁଆର (ବିକ୍ଷୋଭ) ଆଉ ନାହିଁ । କମ୍ୟୁନିଷ୍ଟମାନେ ବେଶୀ ଭୋଟ ପାଉଛନ୍ତି । ବର୍ତ୍ତମାନ ସେଠାରେ ବେକାରି, ଗୃହସଂଖ୍ୟା ଏବଂ ଦ୍ରବ୍ୟମୂଲ୍ୟ ବୃଦ୍ଧି ବିରୁଦ୍ଧରେ ଶୋଭାଯାତ୍ରା ହେଉଛି ।

ଏହା ହୁଏତ ଗୋଟିଏ ଶ୍ରେଷ୍ଠ ଲକ୍ଷଣ, ତେବେ ଜର୍ମାନୀରେ ଏବେ ସବୁଠାରୁ ବେଶୀ ବିକ୍ରିତ ଜିନିଷ ହେଲା—"ପ୍ରାଚୀରକୁ ଫେରାଇ ଆଣ"—ଲେଖା ହୋଇଥିବା ଟି-ସାର୍ଟ । ଅବଶ୍ୟ ସେମାନେ ପ୍ରକୃତରେ ପୁନରାୟ ପ୍ରାଚୀରକୁ ଫେରେଇ ଆଣିବା ଚାହାନ୍ତି ନାହିଁ । ଯାହା ସେମାନେ ଚାହାନ୍ତି ତାହା ହେଉଛି ଚାକିରି, ବେକାରିରୁ ରକ୍ଷା ପାଇବା, ବାସସ୍ଥାନର ଅଭାବ, କ୍ଷୁଧା ଏବଂ ଦାରିଦ୍ର୍ୟ ବିରୁଦ୍ଧରେ ସମାଜତାନ୍ତ୍ରିକ ଗ୍ୟାରେଣ୍ଟି, ସେମାନେ ଧନତାନ୍ତ୍ରିକ ସମାଜର ସମସ୍ତ ପାପ ବିରୁଦ୍ଧରେ ପ୍ରତିବାଦ କରି ଆସିଛନ୍ତି । କିନ୍ତୁ ଆଜି ସେମାନେ ଯାହାର ଶୀକାର ହୋଇଛନ୍ତି । ସମାଜତନ୍ତ୍ରର ଧ୍ୱଂସ ସହିତ ସେମାନେ ଯାହା କିଛି ହରାଇଛନ୍ତି "ପ୍ରାଚୀର" ତାହାର ପ୍ରତୀକ ହୋଇ ଉଠିଛି ।

## ଗୋର୍ବାଚେଭ—ୟେଲତ୍ସିନଙ୍କ କର୍ମସୂଚୀ :

ଗୋର୍ବାଚେଭ—ୟେଲତ୍ସିନ୍, ଶୋଭାର୍ଦନେଜ, ୟାକୋଭଲେଭଙ୍କର ନୂତନ ଖସଡ଼ା କର୍ମସୂଚୀ ଉପରେ ଭିତ୍ତି କରି ପରରାଷ୍ଟ୍ର ଓ ଅଭ୍ୟନ୍ତରୀଣ ଉଭୟ କ୍ଷେତ୍ରରେ କାର୍ଯ୍ୟ କରୁଛି । ଏହି କର୍ମସୂଚୀରେ ଦ୍ୱର୍ଥହୀନ ଭାଷାରେ କୁହାଯାଇଛି ଯେ, ସେମାନେ ଯେଉଁ ନୂତନ ବିଶ୍ୱ ସଭ୍ୟତା କଥା କହୁଛନ୍ତି ସେଥିରେ — ସଂଘର୍ଷ ଭିତ୍ତିକ ରାଜନୈତିକ ମତବାଦର ଅବସାନ କରାଯିବ, ଶତ୍ରୁ ଶ୍ରେଣୀ ବିରୋଧୀତାକୁ ଖତମ କରାଯିବ ।

—ପରସ୍ପର ବିରୋଧୀ ଶ୍ରେଣୀରେ ବିଭକ୍ତ ସମାଜକୁ ବି ନଷ୍ଟ କରାହେବ ।

—ଶ୍ରମ ଏବଂ ପୁଞ୍ଜିର ବିଭାଗକୁ ବିଲୁପ୍ତ କରାହେବ ।

—ଏବଂ ସମାଜତନ୍ତ୍ର ଓ ଧନତନ୍ତ୍ର ଏଇ ଦୁଇଟି ସାମାଜିକ ବ୍ୟବସ୍ଥା ମଧ୍ୟରେ ସଂଘର୍ଷକୁ ନଷ୍ଟ କରାହେବ ।

ଏହି ପ୍ରକାରର ଗୋଟିଏ ପୃଥିବୀରେ ଆମେ ବାସକରୁ ନାହୁଁ ।

ଏକଥା କହିବା ବାହୁଲ୍ୟ ଯେ, ସେମାନେ ଗୋଟାଏ ସ୍ୱପ୍ନ ମଧ୍ୟରେ ଗୋଟାଏ ଉଦ୍ଭଟ ସ୍ୱପ୍ନ ଭିତରେ କାମ କରୁଛନ୍ତି । ଏ ସବୁକୁ ଧ୍ୱଂସ କରିବା ଏକମାତ୍ର ସେତେବେଳେ ହିଁ ସମ୍ଭବ, ଯେତେବେଳେ କି ପ୍ରକୃତରେ ପୃଥିବୀ ଧନତନ୍ତ୍ର, ଶ୍ରେଣୀ ଶୋଷଣ, ଜାତି ବିଦ୍ୱେଷ, ସାମ୍ରାଜ୍ୟବାଦ, ଉପ-ନିବେଶବାଦ, ଶ୍ରେଣୀ ସଂଗ୍ରାମ, ଏକ ଚାଟିଆ ପୁଞ୍ଜିବାଦ ଏବଂ ଯେଉଁ ଅନ୍ତର୍ନିହିତ କାରଣରୁ ସମାଜ ପରିଚାଳିତ ହୁଏ, ସେଥିରୁ ମୁକ୍ତ ହେବ । କିନ୍ତୁ ତାହା ଘଟିନାହିଁ ।

ଏବେ କମ୍ୟୁନିଷ୍ଟ ପାର୍ଟି ସମାଜତନ୍ତ୍ରକୁ ରକ୍ଷା କରିବାର ପ୍ରଧାନ ଶକ୍ତି ଯେତେବେଳେ ଛିନ୍ନଛତ୍ର ହେଉଛି ସେତେବେଳେ ଗୋର୍ବାଚେଭ ୟେଲତ୍ସିନ୍ ଚହ ଛୁଟି ଚାଲିଛନ୍ତି । ନୂତନ ସୌରତାନ୍ତ୍ରିକ ବ୍ୟବସ୍ଥା ଚାଲୁ କରିବା ପାଇଁ, ଯେଉଁ ବ୍ୟବସ୍ଥା ଗୁଡ଼ିକ ସମ୍ପର୍କରେ ବୁଶ୍ ପ୍ରଶାସନ ନିର୍ଦ୍ଦେଶ ଦେବେ । ଏବେ ବୁଶ୍ଙ୍କର ଯାହା କରଣୀୟ ତାହା ହେଲା ପ୍ରତିଶ୍ରୁତି ଦେବା ଏବଂ ଗୋର୍ବାଚେଭ ୟେଲସିନ୍ଙ୍କର କରଣୀୟ ହେଲା ସମାଜତନ୍ତ୍ର ଠାରୁ ପଛକୁ ହଟିବା ।

ବର୍ତ୍ତମାନ ସୋଭିଏତ୍ ୟୁନିଅନରେ ଯେଉଁ ସଂଗ୍ରାମ ଚାଲିଛି ତାହା ଆଉ ଗଣତନ୍ତ୍ର ବା ଗଣତନ୍ତ୍ର ବିରୋଧୀତା ମଧ୍ୟରେ ନୁହେଁ । ସଂଗ୍ରାମର ମୂଳ ପ୍ରଶ୍ନ ହେଉଛି ସମାଜ-ତନ୍ତ୍ରକୁ ରକ୍ଷା କରିବା ଏବଂ ଚୋର ବାଟରେ ଧନତନ୍ତ୍ର ଆମଦାନୀ କରିବା ମଧ୍ୟରେ ।

ଏହା ସତ୍ୟ ଯେ, ସମାଜତନ୍ତ୍ର ଓ ଗଣତନ୍ତ୍ର ଅବିଚ୍ଛେଦ୍ୟ । କିନ୍ତୁ ଏହା ମଧ୍ୟ ସତ୍ୟ ଯେ, ସମାଜତନ୍ତ୍ର ଏବଂ ଶ୍ରେଣୀ ସଂଗ୍ରାମ ମଧ୍ୟ ଅବିଚ୍ଛେଦ୍ୟ । ଏହି ସଂଗ୍ରାମର ଫଳାଫଳ ଏକମାତ୍ର ନିର୍ଦ୍ଧାରିତ ହେବ ସୋଭିଏତ୍ ୟୁନିଅନର ଶ୍ରମିକଶ୍ରେଣୀ ଓ ଜନଗଣଙ୍କ ଦ୍ୱାରା ।

## ମଣିଷର ଭୁଲ :

ମନ୍ଦ କେହି ବିଶ୍ୱାସ କରେ ଯେ, ସମାଜବାଦର ସଂକଟ ଧାରାବାହିକ ନୁହେଁ ବା ଅନ୍ୟ କଥାରେ ସମାଜତାନ୍ତ୍ରିକ ବ୍ୟବସ୍ଥା ମଧ୍ୟରେ ନିହିତ ନୁହେଁ, ତା'ହେଲେ ମଣିଷର ଭୁଲ ମଧ୍ୟରେ ଏହି ସଙ୍କଟ ରହିଛି ବୋଲି ଖୋଜିବାକୁ ହେବ । ମୁଁ ବିଶ୍ୱାସ କରେ ନାହିଁ ଯେ, ଏଥିପାଇଁ ଷ୍ଟାଲିନ୍‌ଙ୍କ ସମୟ ଠାରୁ ଭୁଲ ଏବଂ ଅପରାଧ ଆରମ୍ଭ ହୋଇଛି । କିନ୍ତୁ ପ୍ରତ୍ୟେକଟି ଐତିହାସିକ ଯୁଗରେ କ୍ରୁଶ୍ଚେଭ,ବ୍ରେଜନେଭ, କୋସିଜିନ ଏବଂ ଅନ୍ଦ୍ରୋପଭଙ୍କ ନେତୃତ୍ୱ ସମୟରେ ବଡ଼ ବଡ଼ ସାଫଲ୍ୟମାନ ମଧ୍ୟ ଘଟିଛି । ଫାଶିଜିମ୍ ବିରୁଦ୍ଧରେ ସଂଗ୍ରାମ ଯେଉଁଥିରେ ଦୁଇକୋଟି ସତୁରି ଲକ୍ଷ ସୋଭିଏତ୍ ବାସୀ ସେମାନଙ୍କର ପ୍ରାଣ ଦେଲେ, ଗୋଟାଏ ବିଶାଳ ପଶ୍ଚାତ୍‌ପଦ ଦେଶର ପୁନର୍ଗଠନ ଓ ଶିଳ୍ପାୟନ, ଜନଗଣଙ୍କ ପାଇଁ ବାସସ୍ଥାନ, ଖାଦ୍ୟ, ଶିକ୍ଷା ଏବଂ ସ୍ୱାସ୍ଥ୍ୟରକ୍ଷାର ବ୍ୟବସ୍ଥା, ବିଜ୍ଞାନ ଏବଂ ମହାକାଶ ଅଭିଯାନରେ ବ୍ୟାପକ ଅଗ୍ରଗତି । ସୋଭିଏତ୍ ସମାଜତନ୍ତ୍ର ନିର୍ମାଣ ଫଳରେ କ୍ଷୁଧା, ପ୍ଲେଗ, ଶିଶୁ ମୃତ୍ୟୁ, ଅଶିକ୍ଷା, ବେକାରି ଏବଂ ଧନତାନ୍ତ୍ରିକ ସମାଜର ସମସ୍ତ ଅନ୍ତର୍ନିହିତ ଭୟାବହ ଅବସ୍ଥା ଗୁଡ଼ିକୁ ଦୂର କରିବା ସମ୍ଭବ ହୋଇଛି ।

ସମାଜତନ୍ତ୍ରର ଏହି ସବୁ ସାଫଲ୍ୟ ଏବଂ କଲ୍ୟାଣ ଗୁଡ଼ିକ ଏହି ଘଟଣା ସତ୍ତ୍ୱେ ମଧ୍ୟ ଘଟିଛି, ଯେତେବେଳେ ଦ୍ୱିତୀୟ ବିଶ୍ୱ ଯୁଦ୍ଧର କ୍ଷୟକ୍ଷତି ପୁନର୍ନିର୍ମାଣ ପାଇଁ ସୋଭିଏତ୍ ଜନଗଣଙ୍କୁ କାମ କରିବାକୁ ବାଧ୍ୟ କରାଯାଇଛି । ଶୀତଳ ଯୁଦ୍ଧର ପରିବେଶରେ ସାମ୍ରାଜ୍ୟବାଦୀ ଧ୍ୱଂସାତ୍ମକ କାର୍ଯ୍ୟ ମଧ୍ୟରେ ଯେତେବେଳେ ନବଗଠିତ ସମାଜତାନ୍ତ୍ରିକ ସମାଜଗୁଡ଼ିକୁ ଏବଂ ସମଗ୍ର ବିଶ୍ୱର ଜାତୀୟ ମୁକ୍ତି ଆନ୍ଦୋଳନଗୁଡ଼ିକୁ ସମର୍ଥନ ଦାନ ପାଇଁ ବ୍ୟାପକ ଆତ୍ମତ୍ୟାଗ କରିବାକୁ ହୋଇଛି ।

ସମଗ୍ର ଇତିହାସରେ ଆଉ କୌଣସି ଦେଶ ଏଥିପାଇଁ ଏତେଗୁଡ଼ିଏ ଦେଶକୁ ଏତେ ବେଶୀ ସାହାଯ୍ୟ ଦେଇନାହାନ୍ତି ।

## କେହି କେହି କମ୍ୟୁନିଷ୍ଟ ଦମନ ସମର୍ଥନ କରନ୍ତି :

ମୁଁ ବିଶ୍ୱାସ କରେ ନାହିଁ ଯେ, କମ୍ୟୁନିଷ୍ଟ ବିରୋଧୀ ଦମନ ମୂଳକ ଅଭିଯାନକୁ କେହି ସମର୍ଥନ କରିବେ । ଏବଂ ସଙ୍କଟ ପାଇଁ ନିପୀଡ଼ିତମାନଙ୍କୁ ଅର୍ଥାତ୍ କମ୍ୟୁନିଷ୍ଟମାନଙ୍କୁ ଦୋଷ ଦେବେ । କିନ୍ତୁ ଏପରି ଲୋକ ମଧ୍ୟ ବହୁତ ଅଛନ୍ତି; ଏ ପ୍ରକାରର ଅଦ୍ଭୁତ ଯୁକ୍ତି ମୁଁ କେବେ ହେଲେ ଶୁଣିନାହିଁ ।

ଏହି ଧରଣର ଯୁକ୍ତି ବ୍ୟବହାର କରି ସେମାନେ ହିଟ୍‌ଲରର ଫାଶିବାଦର ଦାୟ କମ୍ୟୁନିଷ୍ଟମାନଙ୍କ ଉପରେ ଏବଂ ଫାଶି ବିରୋଧୀମାନଙ୍କ ଉପରେ ଲଦିବେ । ଏହି ଧରଣର ଯୁକ୍ତି ବ୍ୟବହାର କରି ଜାତିବିଦ୍ୱେଷ ପାଇଁ ଆଫ୍ରିକା ଓ ଆମେରିକାର ଜନଗଣଙ୍କୁ ଦାୟୀ କରିବେ ଯେପରି ଦକ୍ଷିଣ ପନ୍ଥୀମାନେ କରିଥାନ୍ତି । ଯାହାକୁ ବଳି ଦିଆଯାଏ ତା'ଉପରେ ଦୋଷ ଢ଼ାଳିବା ମାନବ ସଭ୍ୟତାର ଆରମ୍ଭ ପରି ପୁରୁଣା ।

ଯେ କେହି, ଯେକୌଣସି ଭାବେ ହେଉ କମ୍ୟୁନିଷ୍ଟ ବିରୋଧୀ ସନ୍ତ୍ରାସ ସପକ୍ଷରେ କୈଫିୟତ ଦିଅନ୍ତି ଏବଂ ଏହାର ସମସ୍ତ ଦୋଷ କମ୍ୟୁନିଷ୍ଟମାନଙ୍କ ଉପରେ ଢ଼ାଳି ଦିଅନ୍ତି, ସେମାନଙ୍କର ଅବସ୍ଥାନ ଦକ୍ଷିଣପନ୍ଥୀ ପ୍ରତିକ୍ରିୟାର ଶିବିରରେ ।

ମୁଁ କେବେ ହେଲେ କୈଫିୟତ୍ ଦେବି ନାହିଁ, ହାତ ଟାଳି ଦେବି ନାହିଁ ଅଥବା ନୀରବ ରହିବି ନାହିଁ । ଯେଉଁଠି ଯେତେବେଳେ ହେଉ କମ୍ୟୁନିଷ୍ଟମାନଙ୍କୁ ଜେଲ୍ ଦିଆଯିବ ଏବଂ ସେମାନଙ୍କ ପାର୍ଟିକୁ ବେଆଇନ କରାଯିବ । କମ୍ୟୁନିଷ୍ଟ ବିରୋଧୀ ସନ୍ତ୍ରାସକୁ ସମର୍ଥନ କରିବା ପାଇଁ ଯୁକ୍ତି ଖୋଜିବା ହେଉଛି ଜଘନ୍ୟ ଧରଣର ସୁବିଧାବାଦ ।

## ଦୁର୍ବଳ ସୋଭିଏତ୍ ୟୁନିଅନ ଯୋଗୁଁ କ୍ଷତି :

ସୋଭିଏତ୍ ୟୁନିଅନରେ କମ୍ୟୁନିଷ୍ଟ ପାର୍ଟିକୁ ଧ୍ୱଂସ କରିବାର ଉଦ୍ୟମ ଗୋଟିଏ ରାଜନୈତିକ ଦଳକୁ ଧ୍ୱଂସ କରିବାଠାରୁ ଅନେକ ବେଶୀ ବଡ଼ ଘଟଣା । ଏହି ଘଟଣାକୁ, ସମାଜତନ୍ତ୍ରକୁ, ମାର୍କସବାଦ ଲେନିନବାଦକୁ, ଶ୍ରମିକଶ୍ରେଣୀର ମତବାଦକୁ, ଶ୍ରମିକଶ୍ରେଣୀର ଭୂମିକା ଏବଂ ଶ୍ରେଣୀ ସଂଗ୍ରାମକୁ ବାତିଲ କରିବା ପ୍ରଚେଷ୍ଟାରୁ ଅଲଗା କରାଯାଇ ପାରିବ ନାହିଁ ।

ଦୁନିଆ କ୍ଷେତ୍ରରେ ଗୋଟିଏ ଦୁର୍ବଳ ବିଭକ୍ତ ସୋଭିଏତ୍ ୟୁନିଅନ ଯାହାର କେନ୍ଦ୍ରୀୟ ସରକାର ନାହିଁ ଏବଂ ଶାନ୍ତିମତ ନାହିଁ, ତା' ସାମଗ୍ରିକ ଭାବେ ପରମାଣୁ ଯୁଦ୍ଧ, ନିରସ୍ତ୍ରୀକରଣ ଓ ବିଶ୍ୱଶାନ୍ତି ପକ୍ଷରେ ସବୁଠାରୁ ପ୍ରଭାବଶାଳୀ ଶକ୍ତିକୁ ନିର୍ମୂଳ କରିଦେବା ।

ସୋଭିଏତ୍ ୟୁନିଅନ ୟୁରୋପରେ ଆଉ ସେ ପ୍ରକାର ପାଲଟା ଶକ୍ତି ରହିବ ନାହିଁ, ଯାହା ଧନତାନ୍ତ୍ରିକ ଜର୍ମାନୀର ଓ ପ୍ରଭାବକୁ ବୃଦ୍ଧି କରିବ ।

ସେ ସମସ୍ତ ଆସିବାକୁ ଡେରି ହେବ ଯେତେବେଳେ ସୋଭିଏତ୍ ୟୁନିଅନ ଅର୍ଥନୈତିକ ଭାବେ ଏବଂ କୂଟନୈତିକ

ସବେ ତୃତୀୟ ବିଶ୍ୱର ଦେଶ ଗୁଡ଼ିକୁ ସମର୍ଥନ କରିବା କ୍ଷେତ୍ରରେ ପ୍ରଧାନ ଭିତ୍ତି ହେବ ।

ଏହା ସାମ୍ରାଜ୍ୟବାଦର ଆକ୍ରମଣ ଓ ଲୁଣ୍ଠନ ବିରୁଦ୍ଧ-ରେ ପାଲଟା ଶକ୍ତି ହେବ ନାହିଁ । ଏହା ସାମ୍ରାଜ୍ୟବାଦକୁ ତାହାର ଆକ୍ରମଣାତ୍ମକ ନୀତିକୁ ଦୃଢ଼ତର କରିବା ସ୍ୱାଧୀନତା ଦେବ ଏବଂ ଅବଶ୍ୟ ସମାଜତାନ୍ତ୍ରିକ 'କ୍ୟୁବା' ଏକ ନୂତନ ଆଶୁ ବିପଦର ସମ୍ମୁଖୀନ ହେବ ।

ମାର୍କିନ ଦେଶର ବହୁ ଜାତିକ କମ୍ପାନୀମାନେ ଏବେ ଯାହା ଇଚ୍ଛା ତାହା ସ୍ୱାଧୀନତା ପାଇବେ । ହଠକାରୀ ସାମରିକ ଅଭିଯାନ ଏବଂ ଯୁଦ୍ଧ ବଢ଼ିବ । ଜାତୀୟ ମୁକ୍ତି ପାଇଁ ସଂଗ୍ରାମ ଆହୁରି କଠିନ ହୋଇ ଉଠିବ । ସମଗ୍ର ବିଶ୍ୱବ୍ୟାପୀ ବର୍ଣ୍ଣ ବୈଷମ୍ୟବାଦ ବିରୁଦ୍ଧରେ ଏବଂ ସମାନ ଅଧିକାର ଲାଭର ସଂଗ୍ରାମ ଏବଂ ବିଶେଷ କରି ଦକ୍ଷିଣ ଆଫ୍ରିକା ତାହାର ଜଣେ ଶକ୍ତିଶାଳୀ ପ୍ରବକ୍ତାଙ୍କୁ ହରାଇବ । ସାମଗ୍ରୀକ ଭାବେ ବିଶ୍ୱ ହେବ କମ୍ ଶାନ୍ତିପୂର୍ଣ୍ଣ ବିପଜ୍ଜନକ ସ୍ଥାନ ।

ଏହି ହେଉଛି ସମୟ ଯେତେବେଳେ ବିଶ୍ୱର କମ୍ୟୁନିଷ୍ଟ ନେତାମାନେ ସମସ୍ତେ ଏକତ୍ର ଏହାର ପର୍ଯ୍ୟା-ଲୋଚନା, ସମୀକ୍ଷା କରିବା ଏବଂ କିଛି ସିଦ୍ଧାନ୍ତରେ ଉପନୀତ ହେବା ଉଚିତ ।

ସମସ୍ତ ପ୍ରଗତିଶୀଳ ସାମ୍ରାଜ୍ୟବାଦ ବିରୋଧୀ ଶାନ୍ତି କାମୀ ଜନଗଣଙ୍କୁ ମଧ୍ୟ ଉଦ୍‌ଯୋଗ କରିବାକୁ ହେବ । ମୁଁ ମନେ କରେ ଆମର ପ୍ରୟୋଜନ କ୍ୟୁବାକୁ ରକ୍ଷା କରିବା ପାଇଁ ବିଶ୍ୱବ୍ୟାପୀ ଗୋଟାଏ ସମ୍ମିଳନ କରିବା ।

କମ୍ୟୁନିଷ୍ଟ ହିସାବରେ ଆମେ କ୍ୟୁବା ବିରୁଦ୍ଧରେ ଜଯୃକଟ, ଅବରୋଧ ଏବଂ ହସ୍ତକ୍ଷେପ କରିବା ପାଇଁ ଯେଉଁ ପ୍ରଚାର କରାଯାଉଛି ତାହାର ମୁଖା ଖୋଲିଦେବା ଲାଗି ଆମର ସମସ୍ତ ଶକ୍ତି ଦେଇ ସବୁକିଛି କରିବା । ଆମେ କ୍ୟୁବାକୁ ରକ୍ଷା କରିବା ସମର୍ଥନରେ ସମସ୍ତ ପ୍ରକାର ସମର୍ଥନ ଓ ସାହାଯ୍ୟ କରିବା ଏବଂ କ୍ୟୁବା-ମାର୍କିନ ସଂହତିକୁ ଶକ୍ତିଶାଳୀ କରିବା ।

ସୋଭିଏତ୍ ସମାଜତନ୍ତ୍ରକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ ଆମେ ଅବଶ୍ୟ ସମାଜତାନ୍ତ୍ରିକ କ୍ୟୁବାକୁ ରକ୍ଷା କରିବା ପାଇଁ ତାହା ସପକ୍ଷରେ ଶକ୍ତି ସମାବେଶ କରିବୁ ।

ଆମେ ଚୀନ୍, ଭିଏତ୍‌ନାମ ଏବଂ କୋରିଆରେ ସମାଜତନ୍ତ୍ର ନିର୍ମାଣକୁ ସମର୍ଥନ କରିବୁ । ଯେଉଁ ସବୁ ଦେଶ ସମାଜତନ୍ତ୍ର ନିର୍ମାଣ କରୁଛନ୍ତି ସେମାନଙ୍କ ବିରୁଦ୍ଧରେ ହସ୍ତକ୍ଷେପ କରିବା ପାଇଁ ଶକ୍ତିଶାଳୀ ସାମ୍ରାଜ୍ୟବାଦ ବିଶେଷ କରି ମାର୍କିନ ସାମ୍ରାଜ୍ୟବାଦର ଯେକୌଣସି ପ୍ରଚେଷ୍ଟାକୁ ଆମେ ନିନ୍ଦା କରିବୁ । ତାହା ସହିତ ବିଶ୍ୱର ଜାତୀୟ ମୁକ୍ତି ସଂଗ୍ରାମ ଓ ବିପ୍ଳବୀ ଆନ୍ଦୋଳନକୁ ବିପଥରେ ପରିଚାଳନା କରିବାର ଯେକୌଣସି ପ୍ରଚେଷ୍ଟାକୁ ଆମେ ଧିକ୍‌କାର କରିବୁ ।

## ଦୁଇଟି ସଙ୍କଟର ଭବିଷ୍ୟତ :

ଏହି ଦୁଇଟି ସଙ୍କଟର ଭବିଷ୍ୟତ କ'ଣ ?

ଯେହେତୁ ପୁଞ୍ଜିବାଦର ସଙ୍କଟ ହେଲା ଧାରାବାହିକ ଏବଂ ଅବଶ୍ୟମ୍ଭାବୀ, ସେଥିପାଇଁ ଏହାର ପ୍ରଭାବକୁ ଧ୍ୱଂସ କରିବାର ଏକମାତ୍ର ବାଟ ହେଲା ଐକ୍ୟ ଏବଂ ସଂଗ୍ରାମ । ଏଣୁ ଶ୍ରମିକ ଶ୍ରେଣୀ, କଳା, ଗୋରା ପ୍ରଭୃତି ପ୍ରତ୍ୟେକ ଜନଗଣଙ୍କ ସଂଗ୍ରାମୀ ଐକ୍ୟ ଆବଶ୍ୟକ ।

କିନ୍ତୁ ଶେଷ ପର୍ଯ୍ୟନ୍ତ ପୁଞ୍ଜିବାଦକୁ ଧ୍ୱଂସ କରିବା ହେଉଛି ଏଥିରୁ ମୁକ୍ତି ପାଇବାର ଏକମାତ୍ର ବାଟ । ତେଣୁ ଘଟଣା ହେଉଛି ସମାଜବାଦ ହିଁ ପୁଞ୍ଜିବାଦର ସଙ୍କଟ ଗୁଡ଼ିକୁ ସଂଶୋଧନ ଓ ସମାଧାନ କରିପାରେ । ପୁଞ୍ଜିବାଦ ଜୀବନମାନର କ୍ରମାଗତ ଅଧୋଗତି, ସମାଜବାଦ ପାଇଁ ଅବଶ୍ୟମ୍ଭାବୀତାର ପ୍ରୟୋଜନ ସୃଷ୍ଟି କରେ ।

ସମାଜତନ୍ତ୍ର ସଙ୍କଟ ସେତିକିବେଳେ ଶେଷ ହେବ ଯେତେବେଳେ ସୋଭିଏତ୍ ୟୁନିଅନର ଶ୍ରମିକ ଶ୍ରେଣୀ ଓ ଜନଗଣ ଗୋଟିଏ ପୁନର୍ଗଠିତ ଶକ୍ତିଶାଳୀ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ଆଦର୍ଶଗତ ରାଜନୈତିକ ଏବଂ ଅର୍ଥନୈତିକ କ୍ଷେତ୍ରରେ ସେମାନଙ୍କ ଦେଶକୁ ଗୋଟାଏ ବଳିଷ୍ଠ ସମାଜ-ତାନ୍ତ୍ରିକ ପଥକୁ ଫେରାଇ ଆଣିବାର ସିଦ୍ଧାନ୍ତ ନେବେ । ସେମାନେ ଭବିଷ୍ୟତ ଆଡ଼କୁ ଯିବା ପାଇଁ ଆହୁରି ଗଣତାନ୍ତ୍ରିକ, ଆହୁରି ସମାଜତାନ୍ତ୍ରିକ ଭବିଷ୍ୟତ ପାଇଁ ଅତୀତର ଭୁଲରୁ ଶିକ୍ଷା ନେବେ ଓ ନିଜକୁ ସଂଶୋଧନ କରିବେ ।



# ମୃତ୍ୟୁହୀନ ଅମର ଆଦର୍ଶ-କମ୍ୟୁନିଜମ୍

● ଆଶିଷ ମହାପାତ୍ର

"Marxism is Omenipotent, because it is base of upon truth." ସତ୍ୟ ଚିରନ୍ତନ, ତେଣୁ ତାହା ଅମର । ସୋଭିଏଟ୍ ରୁଷରେ ନିକଟ ଅତୀତରେ ଘଟିଯାଇଥିବା ଘଟଣାବଳୀ ଓ ତା' ପୂର୍ବରୁ ପୂର୍ବ ୟୁରୋପରେ କମ୍ୟୁନିଷ୍ଟ ଶାସନର ବିଲୋପ କେବଳ ବୈଜ୍ଞାନିକ ସମାଜବାଦୀ ଦର୍ଶନ ତଥା ମତାଦର୍ଶରେ ବିଶ୍ୱାସ ରଖିଥିବା ବିଶ୍ୱର କୋଟି କୋଟି ନରନାରୀଙ୍କୁ କେବଳ ନୁହେଁ, ସାମଗ୍ରିକ ଭାବେ ପ୍ରଗତି, ସାମ୍ୟ ଓ ବିଶ୍ୱଶାନ୍ତିର ଭବିଷ୍ୟତ ପାଇଁ ଉଦଗ୍ର ଆକାଂକ୍ଷା ପୋଷଣ କରିଥିବା ଅସଂଖ୍ୟ ବୁଦ୍ଧିଜୀବି ତଥା ଶ୍ରମଜୀବି ଜନସାଧାରଣଙ୍କୁ ବ୍ୟଥିତ ଓ ମ୍ରିୟମାଣ କରିଛି । ଆଜି ସେମାନଙ୍କ ମଧ୍ୟରେ ଜ୍ୱଳନ୍ତ ପ୍ରଶ୍ନ ଉଠୁଛି, ଯଦି ମାର୍କସ୍‌ବାଦ-ଲେନିନ୍‌ବାଦୀ ଭାବାଦର୍ଶର କାର୍ଯ୍ୟକରଣରେ ଏତେ ବିସଙ୍ଗତି ଦେଖାଦେଇ, ତାହା ସେହିସବୁ ଦେଶର ଜନସାଧାରଣଙ୍କ ପାଖରେ ଅନାଦୃତ ହେଲା, ତେବେ ଶୋଷଣ-କଷଣବିହୀନ ସାମ୍ୟ-ଶାନ୍ତି, ମୁକ୍ତି ଓ ଭାତୃତ୍ୱର ଏହି ଆଦର୍ଶ କଣ ଅସାର ? ଏହା କଣ ବିଶ୍ୱକ୍ଷେତ୍ରରେ ବିଭିନ୍ନ ରାଷ୍ଟ୍ରର ସାମାଜିକ ବିକାଶର କ୍ଷେତ୍ରରେ କଣ ତାର ଆବେଦନ ଓ ପ୍ରାସଙ୍ଗିକତା (Relivence) ହରାଇଛି ? ଏବଂ ସାମାଜିକ ମାଲିକାନା (Ownership of the Society)—ଜନସାଧାରଣଙ୍କର ଯୌଥ ମାଲିକାନା ପରିବର୍ତ୍ତେ କଣ ବ୍ୟକ୍ତିଗତ ମାଲିକାନା, ତାର ବଳରେ ଅର୍ଥ ପୁଞ୍ଜିର ଆଧିପତ୍ୟର ବ୍ୟବସ୍ଥା ଏକ ସାମାଜିକ ବ୍ୟବସ୍ଥା ରୂପେ ଅଧିକ ଉତ୍କର୍ଷତର ଓ ବରଣୀୟ । ତେବେ ଶତାବ୍ଦୀ ଶତାବ୍ଦୀ ଓ ଯୁଗ ଯୁଗ ଧରି ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦ ବିରୋଧରେ କୋଟି କୋଟି ଜନସାଧାରଣଙ୍କର ଜାତୀୟ ମୁକ୍ତି ସଂଗ୍ରାମ ଓ ଶ୍ରମଜୀବି ଶ୍ରେଣୀର ସଂଗ୍ରାମ କଣ ଭୁଲ ଥିଲା ? ପୁନଶ୍ଚ ବହ୍ନିମାନ ପ୍ରଶ୍ନ ହେଉଛି, ବିଶ୍ୱର ଶତ କୋଟି ନରନାରୀ ଜାନୁପାତ ପୂର୍ବକ କଣ ଏକ ମେରୁ ବିଶିଷ୍ଟ ବିଶ୍ୱ ( Unipolar World )ର ନେତା ହିସାବରେ ମାର୍କିନ ଯୁକ୍ତରାଷ୍ଟ୍ରର ସାମ୍ରାଜ୍ୟବାଦୀ-ନବଉପନିବେଶବାଦୀ ଶୋଷଣ, ଆଧିପତ୍ୟ, କ୍ଷମତା ବିସ୍ତାରକୁ ଗ୍ରହଣ କରିନେବେ ? ତେବେ ବ୍ୟକ୍ତିଗତ ସ୍ୱାଧୀନତା ନାମରେ ରକ୍ତଶୋଷକ ସାମାଜିକ ପରଜୀବି-ମହାଙ୍କ ଏକଗୁଟିଆ ପୁଞ୍ଜିପତି ଶ୍ରେଣୀର ଅବାଧ ଲୁଣ୍ଠନର କଳାବେଦିର ସଇତାନ ରାଜତ୍ୱ ସାରା ବିଶ୍ୱକୁ କଣ ଆବୋରି ବସିବ ? ତେଣୁ ଦୁନିଆର, ତାର ଜନସାଧାରଣଙ୍କର ମୁକ୍ତିର ରାସ୍ତା କଣ ? କାହିଁ ସେ ରାସ୍ତା ?

ମଣିଷକୁ ଭଲ ପାଉଥିବା, ମଣିଷ ସମାଜର ଆର୍ଥିକ ଓ ବାସ୍ତବ ବିକାଶ ପାଇଁ ସଂଗ୍ରାମ କରୁଥିବା ସମସ୍ତ ମଣିଷ ଓ ସାମାଜିକ ବିଜ୍ଞାନର ପଣ୍ଡିତ ତଥା ସମାଜବାଦ ନିର୍ମାଣର ରୂପକାରମାନଙ୍କୁ ଏହିସବୁର ଉତ୍ତର ଦେବାକୁ ପଡ଼ିବ । ହଁ, ଏକଥା କୁହାଯାଏ ଯେ ଇତିହାସର ରଥଚକ୍ରକୁ କେହି ପଛକୁ ଫେରାଇ ଦେଇପାରିବ ନାହିଁ । ଆଜି ପୂର୍ବ ୟୁରୋପରେ ଓ ସୋଭିଏଟ୍ ୟୁନିୟନ୍‌ରେ ଘଟିଥିବା ବିପର୍ଯ୍ୟୟ ବିସଙ୍ଗତି ଓ ପଶ୍ଚାତ୍‌ଗତି (set back) ସତ୍ତ୍ୱେ, ଏକଥା କେହି ପ୍ରମାଣିତ କରିପାରିନାହାନ୍ତି ଯେ ସମାଜବାଦୀ ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ବ୍ୟବସ୍ଥା ଠାରୁ ପୁଞ୍ଜିବାଦୀ ବ୍ୟବସ୍ଥା ଉତ୍କୃଷ୍ଟତର । ମାତ୍ର ସମାଜବାଦୀ ବ୍ୟବସ୍ଥାର ରୂପାୟନରେ ହୋଇଥିବା ତ୍ରୁଟି-ବିଚ୍ୟୁତି, ନିର୍ଦ୍ଦିଷ୍ଟ କ୍ଷେତ୍ରରେ ତାର ବିକୃତ ପ୍ରୟୋଗ, ସମାଜବାଦୀ ସମାଜ ଗଠନ ନାମରେ, ପୁଞ୍ଜିପତି ଶ୍ରେଣୀର ଆଧିପତ୍ୟ ଓ ଶୋଷଣ ବଦଳରେ ଆଉ ଏକ ଅମଲାତାନ୍ତ୍ରିକ ଶ୍ରେଣୀର ଶୋଷଣ ବିରୁଦ୍ଧରେ ଜନସାଧାରଣଙ୍କର ବ୍ୟାପକ ମତ ଗଢ଼ିଉଠିଛି । ମାତ୍ର ବ୍ୟାପାରଟି ସେତେ ସରଳ ନୁହେଁ । ସମାଜବାଦୀ ଶିବିରରେ ଥିବା ବହୁ ଦେଶରେ ଦେଖାଦେଇଥିବା ବିସଙ୍ଗତି, ବୈକଲ୍ୟ ଓ ବିଚ୍ୟୁତିକୁ ମାର୍କସବାଦ-ଲେନିନ୍‌ବାଦୀ ମତାଦର୍ଶର ଚେତନା ଓ ସଂଗଠନ ବଳରେ ଦୂର କରାଯାଇପାରିଥାନ୍ତା— ପ୍ରଶାସନିକ ହୁକୁମଜାରି ବ୍ୟବସ୍ଥା ବିରୁଦ୍ଧରେ ମଣିଷର ଅଧିକାର ଓ ନାଗରିକ ସ୍ୱାଧୀନତାର ବିଜୟକୁ ସାମ୍ୟ, ଶାନ୍ତି, ଭାତୃତ୍ୱର ନାରା ସହିତ ସମ୍ମିଳିତ କରାଇ ଆଗାମୀ ଶତାବ୍ଦୀ ପାଇଁ ନୂତନ ସକାଳର ସିଂହଦ୍ୱାରର ଉନ୍ମୋଚନ କରାଯାଇପାରିଥାନ୍ତା । ସମାଜବାଦୀ ଶିବିରର ଦେଶମାନଙ୍କରେ ଉତ୍ପାଦନ ଯନ୍ତ୍ର ବା ସାଧନ ଉପରେ ଶ୍ରମଜୀବି ଜନସାଧାରଣଙ୍କର ମାଲିକତ୍ୱ ଓ କର୍ତ୍ତୃତ୍ୱ ପ୍ରତିଷ୍ଠା କରାଯାଇଥିଲେ ମଧ୍ୟ, ଏକ ଅମଲାତାନ୍ତ୍ରିକ ତଥା ହୁକୁମ ବ୍ୟବସ୍ଥା (Administrative Common of Systen ) ବଳରେ ଏକ ଶକ୍ତିଶାଳୀ ଗୋଷ୍ଠୀ ସର୍ବହରା ତଥା ମେହନତି ଶ୍ରେଣୀର ନିରଙ୍କୁଶ କ୍ଷମତା ପରିବର୍ତ୍ତେ ଏକ ସୁବିଧାଭୋଗୀ ନୂତନ ଶ୍ରେଣୀ ମୁଣ୍ଡ ଟେକି ଉଠିଥିଲେ । କର୍ମନିଯୁକ୍ତି (ସବୁ ମଣିଷକୁ କାମ) ବାସଗୃହ, ଖାଦ୍ୟ ଓ ବସ୍ତ୍ର ଯୋଗାଇଦେବା, ଶିକ୍ଷା, ଚିକିତ୍ସା ବ୍ୟବସ୍ଥାକୁ ସୁନିଶ୍ଚିତ କରିବା ଓ ବିଶାଳ ବିଶାଳ ମୌଳିକ ବୃହତ୍ ଶିଳ୍ପ ପ୍ରତିଷ୍ଠା କରିବା ଏବଂ ସର୍ବୋପରି ଦୁନିଆରେ ସାମ୍ରାଜ୍ୟବାଦ-ଉପନିବେଶବାଦ ବିରୁଦ୍ଧରେ ଅର୍ଥନୈତିକ, ରାଜନୈତିକ ଗଣତନ୍ତ୍ର ପାଇଁ ସଂଗ୍ରାମ କରୁଥିବା

ଜାତିବର୍ଗଙ୍କୁ ସାହାଯ୍ୟ ଯୋଗାଇଦେବାରେ, ସୋଭିଏତ୍ ୟୁନିୟନ୍ ଓ ସମାଜବାଦୀ ଶିବିର ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲେ । ଆଜ ସେସବୁକୁ ଭୁଲିଗଲେ ଚଳିବ ନାହିଁ । ମାତ୍ର ସମାଜବାଦୀ ବ୍ୟବସ୍ଥାର ରୂପାୟନରେ, ତାର କାର୍ଯ୍ୟକରଣରେ ରହିଥିବା ତ୍ରୁଟି-ବିଚ୍ୟୁତି, ବିସଙ୍ଗତି ଓ ବୈକଳ୍ୟ ପ୍ରତି ଆଖି ବୁଜିଦେଲେ, ଏହିସବୁ ଦେଶରେ ଘଟିଥିବା ବିପର୍ଯ୍ୟୟକୁ ଠିକ୍ ଭାବେ ବିଶ୍ଳେଷଣ କରିହେବ ନାହିଁ । ତେଣୁ ସଙ୍ଘଟିତ ବୈକଳ୍ୟ ଓ ବିଘଟନକୁ ସଠିକ୍ ଭାବେ ମୂଲ୍ୟାୟନ କରିବାକୁ ହେବ ।

କେତେଗୋଟି ମହତ୍ତ୍ୱପୂର୍ଣ୍ଣ ଉପାଦାନ ଏକ ସମାଜବାଦୀ ଦେଶର ଚରିତ୍ରଗତ ବୈଶିଷ୍ଟ୍ୟ ଭାବେ ପ୍ରକାଶିତ ହୁଏ । ତାହା ହେଲା ସର୍ବହରାର ଆନ୍ତର୍ଜାତୀୟତା (Prolitarian Internationalism) ବୈପ୍ଳବିକ ଗଣତନ୍ତ୍ର (Revolutionery Democracy) ଓ ଉତ୍ପାଦନର ସାଧନରେ ଶ୍ରମଜୀବୀ ଜନସାଧାରଣଙ୍କର ମାଲିକାନା (Ownership of the People) ସେହିସବୁ ଉପାଦାନର ବିକାଶ ଫଳରେ ଏକ ସମାଜବାଦୀ ସମାଜ ତଥା ରାଷ୍ଟ୍ର, ସାମନ୍ତବାଦୀ ଓ ପୁଞ୍ଜିବାଦୀ ରାଷ୍ଟ୍ରର ଚରିତ୍ରଠାରୁ ଏକ ଉନ୍ନତ ଚରିତ୍ରର ବୈଶିଷ୍ଟ୍ୟ ନେଇ ଚିହ୍ନିତ ହୁଏ । ସୋଭିଏତ୍ ୟୁନିୟନ୍ ଓ ଅନ୍ୟ ସମାଜବାଦୀ ଦେଶମାନଙ୍କରେ ଏସବୁ ଚରିତ୍ରିକ ବୈଶିଷ୍ଟ୍ୟ ଓ ମହତ୍ତ୍ୱ କେତେ ପରିମାଣରେ ପ୍ରତିଫଳିତ ହୋଇଥିଲା, ତାର ଗଭୀର ବିଶ୍ଳେଷଣ ଆବଶ୍ୟକ । ବିଶ୍ୱରେ ଅତୀତ ଦିନରେ ସର୍ବହରା ଆନ୍ତର୍ଜାତିକ ମତାଦର୍ଶରେ ଉଦ୍‌ବୁଦ୍ଧ ଶୋଣିତସ୍ନାତ ଅସଂଖ୍ୟ ବୀରଙ୍କର ଆତ୍ମବଳୀଦାନ ଓ ନିର୍ଯାତନାର ଆଲେଖ୍ୟ ରହିଛି । ସୋଭିଏତ୍‌ର ନୈତିକ, ଅର୍ଥନୈତିକ ଓ ସାମରିକ ସାହାଯ୍ୟ ବଳରେ କ୍ୟୁବା, ଭିଏତ୍‌ନାମ, ଲାଓସ୍, ଇଥିଓପିଆ, ଦକ୍ଷିଣ ୟେମେନ୍, ଆଙ୍ଗୋଲା, ମୋଜାମ୍ବିକ୍, ଗିନିବିସାଉ ଓ ଆହୁରି ଅନେକ ରାଷ୍ଟ୍ର ଜାତୀୟ ମୁକ୍ତି ସଂଗ୍ରାମରେ ବିଜୟଲାଭ କରିଛନ୍ତି ଓ ଦାସତ୍ୱ ଶୃଙ୍ଖଳର ଜଞ୍ଜିରକୁ ସାଗରକୁ ଫୋପାଡ଼ି ଦେଇଛନ୍ତି । ସ୍ୱାଧୀନ ଭାରତ ଇଙ୍ଗ-ଆମେରିକାନ୍ ସାମରିକ ମେଣ୍ଟ ପାଖରେ ଆତ୍ମ ବିକ୍ରୟ ନ କରିବାରୁ, ବହୁଜାତିକ ତନ୍ତ୍ର ବଳରେ ସାମ୍ରାଜ୍ୟବାଦୀ ଦେଶ ବଣ୍ଟୁଆରା କରି ଗଢ଼ିଥିବା ପାକିସ୍ଥାନକୁ ସାମରିକ ଅସ୍ତ୍ରଶସ୍ତ୍ରରେ ବଳୀୟାନ୍ କରି ଏ ଦେଶକୁ ପଦାନତ କରିବାକୁ ଚେଷ୍ଟା କରି ଆସିଅଛି । ଆଜ ଭାରତକୁ କେଉଁ ଅସ୍ତ୍ର, ଯୁଦ୍ଧଯାନ, ଆର୍ଥିକ ଓ ବୈଷୟିକ ସାହାଯ୍ୟ ଅତୀତ ଦିନରେ ବିକ୍ରୟ କରିଆସିଛନ୍ତି ଏବଂ ଭିଟୋ ବଳରେ ସାମ୍ରାଜ୍ୟବାଦର ଧନୁ ପ୍ରବେଶର ଗତିରୋଧ କରିଛନ୍ତି ସେ ମହାଶକ୍ତିର ନାମ ଧରିବାକୁ ପଡ଼ିବ ନାହିଁ । ସୋଭିଏତ୍ ୟୁନିୟନ୍ ତୃତୀୟ ବିଶ୍ୱର ବାସ୍ତବ ମିତ୍ର (Natural ally) ହିସାବରେ ସାହାଯ୍ୟ ତାର ସର୍ବହରା ଆନ୍ତର୍ଜାତିକ ଚେତନାରୁ ସମ୍ଭୂତ ।

## ସମାଜବାଦୀ ଗଣତନ୍ତ୍ର

ତା'ପରେ ପ୍ରଶ୍ନ ହେଲା, ସମାଜବାଦୀ ଦେଶରେ ଗଣତନ୍ତ୍ର ଧନୀକ ଶ୍ରେଣୀ ଶ୍ରେଣୀଶୋଷଣ ଭିତ୍ତିକ ବୈଷମ୍ୟଯୁକ୍ତ ଗଣତନ୍ତ୍ର ନୁହେଁ, ବାସ୍ତବ କ୍ଷେତ୍ରରେ ଜନସାଧାରଣଙ୍କର ଅଧିକାର ସମ୍ବଳିତ ବୈପ୍ଳବିକ ଗଣତନ୍ତ୍ର କିପରି ଭାବେ ପ୍ରତିଫଳିତ ହୋଇଛି ତାହା ବିଚାର୍ଯ୍ୟ । ଲେନିନ ନୂତନ ସୋଭିଏତ୍ ରାଷ୍ଟ୍ର ଉପରେ ୧୬ଟି ସାମ୍ରାଜ୍ୟବାଦୀ ଦେଶର ହସ୍ତକ୍ଷେପ (Intervention) ପରେ ଯୁଦ୍ଧ-ସାମ୍ୟବାଦ (War Communism) ପରିବର୍ତ୍ତେ ଏକ ମାନବିକ ଅଧିକାର ଓ ପ୍ରତ୍ୟେକ ମେହନତି ମଣିଷର ସ୍ୱେଚ୍ଛାନୁସରଣର ଅଧିକାର ସମ୍ବଳିତ ସମାଜର ଡାକରା ଦେଇଥିଲେ । ତାର ରୂପାୟନ ରଚନା ଆରମ୍ଭର ପ୍ରାରମ୍ଭରୁ ସେ ପ୍ରାଣତ୍ୟାଗ କଲେ । ମାତ୍ର ଲେନିନ୍ ବାରମ୍ବାର କହିଛନ୍ତି ଯେ ସମାଜବାଦର ବିକାଶ ପାଇଁ ଗଣତନ୍ତ୍ରର ବିକାଶ ହେଉଛି ଏକ ଅପରିହାର୍ଯ୍ୟ ସର୍ତ୍ତ । ତେଣୁ ରାଷ୍ଟ୍ରଶକ୍ତିକୁ ଏକ ସମାଜବାଦୀ ରାଷ୍ଟ୍ରରେ ପୁରୁଣା ଯୁଗର ଶୋଷକ କୂଳକୁ ଦମନ କରିବାର ଆୟୁଧ ରୂପେ ଯାନ୍ତ୍ରିକ ଭାବେ ବ୍ୟବହାର କରିବାକୁ ସେ ଚାହୁଁନଥିଲେ । ତେଣୁ ତାଙ୍କର ଏତାଦୃଶ ରାଜନୈତିକ ଚିନ୍ତାଧାରାରୁ ଜନ୍ମ ନେଇଥିଲା ସୋଭିଏତ୍ ରାଷ୍ଟ୍ରର ନୂତନ ଅର୍ଥନୈତିକ ନୀତିଧାରା ବା ନେପ୍ (NeW Economic Policy) ଭଳି ଅର୍ଥନୈତିକ ବିନ୍ୟାସର ଚିନ୍ତାଧାରା, ଯେଉଁଥିରେ ଅର୍ଥନୈତିକ ବିକାଶର କ୍ଷେତ୍ରରେ ରାଷ୍ଟ୍ରୀୟ ଉଦ୍ୟୋଗ ସହିତ ସମବାୟ ଉଦ୍ୟୋଗ— କୃଷି ଫାର୍ମ ସହିତ କ୍ଷୁଦ୍ର ଉଦ୍ୟୋଗ, କ୍ଷୁଦ୍ର କାରିଗରୀ ସଂସ୍ଥା, ହସ୍ତଶିଳ୍ପ ଓ କ୍ଷୁଦ୍ର ତଥା ମଧ୍ୟମ କୃଷକମାନଙ୍କର ସମବିକାଶର ସମନ୍ୱିତ ବ୍ୟବସ୍ଥା ରଖାଯାଇଥିଲା । ବିପ୍ଳବବେଳେ ସମଗ୍ର ଜନସଂଖ୍ୟାର ଶତକଡ଼ା ୬ ଭାଗ ଥିବା ଶ୍ରମିକ ଶ୍ରେଣୀର ସଂଖ୍ୟାଗତ ସଂଖ୍ୟାନ୍ୟୂନତାକୁ କଳନା କରି ଲେନିନ୍ ଏକ ଗଣତାନ୍ତ୍ରିକ ପରିବର୍ତ୍ତନ (Structural change) ଓ ଅର୍ଥନୀତିର କ୍ରମବିବର୍ତ୍ତନ ଓ (gradualism)ର ରୂପରେଖ ଦେଉଥିଲେ । ପୁରାତନ ଜାର୍ ଶାସିତ ରୁଷୀୟ ସାମ୍ରାଜ୍ୟକୁ କ୍ଷୁଦ୍ର ଜାତି, ଜନଗୋଷ୍ଠୀର ଜନସାଧାରଣଙ୍କର ଜେଲଖାନା (Prison house of people) ବୋଲି ନାମିତ କରି ଲେନିନ୍ ପ୍ରତ୍ୟେକଟି ଗୋଷ୍ଠୀ, ବଡ଼ ଜାତି-ଉପଜାତିଙ୍କର ଆତ୍ମନିୟନ୍ତ୍ରଣ ଅଧିକାର, ସ୍ୱାଧୀନ ସାମାଜିକ-ସାଂସ୍କୃତିକ ସ୍ୱାତନ୍ତ୍ର୍ୟ ଉପରେ ଜୋର୍ ଦେଇଥିଲେ । ମାତ୍ର ତାଙ୍କର ମୃତ୍ୟୁ ପୂର୍ବରୁ ତାଙ୍କର ଅସୁସ୍ଥତାର ସୁଯୋଗ ନେଇ ଷ୍ଟାଲିନ୍‌ଙ୍କ ନେତୃତ୍ୱରେ ବସ୍ ସେବକ ନେତୃତ୍ୱ

ସେହି ମହତ୍ତ୍ୱପୂର୍ଣ୍ଣ ଚିନ୍ତାଧାରାର ରୂପାୟନ ନାମରେ ଯାହା କଲେ ସେଥିରେ ଏକ ବିଜଳାଙ୍ଗ ବ୍ୟବସ୍ଥା ମୂର୍ତ୍ତ ହୋଇ ଉଠିଲା । ତେଣୁ ଜାତିମାନଙ୍କର ଆତ୍ମନିୟନ୍ତ୍ରଣ ଅଧିକାରକୁ ଷ୍ଟାଲିନ୍ ସମ୍ବିଧାନରେ ସ୍ୱୀକୃତ ଦିଆଯାଇଥିଲେ ମଧ୍ୟ ଜାର୍ ସାମ୍ରାଜ୍ୟର (Unitery) ସାମ୍ବିଧାନିକ ବ୍ୟବସ୍ଥା ବଳବତ୍ତର ରହିଥିଲା । ନେପ୍ (NEP) ବା ନୂତନ ଅର୍ଥନୈତିକ ଚିନ୍ତାଧାରାର ସତର୍କ ପଦକ୍ଷେପକୁ ଭାଙ୍ଗିଦେଇ ଜୋର୍ ଜବରଦସ୍ତ କୃଷି କ୍ଷେତ୍ରରେ କୋଠଗୃହ ବ୍ୟବସ୍ଥାକୁ ଲଦିଦିଆଗଲା । କୃଷିକୁ ଅଗ୍ରାଧିକାର ଦେବା ବଦଳରେ ଭାରି ଶିଳ୍ପକୁ ଗୁରୁତ୍ୱ ଦିଆଗଲା । ଜବରଦସ୍ତ କୋଠଗୃହକୁ ବିରୋଧ କରି ଚାଷୀମାନେ ବଳଦ-ଘୋଡ଼ାଙ୍କୁ ମାରି ଖାଇଲେ ସରକାର ସହିତ ସଂଘର୍ଷରେ ଅନେକ ମଲେ । ଏ ବିସଙ୍ଗତି ଯୋଗୁଁ ଏ ପର୍ଯ୍ୟନ୍ତ ସୋଭିଏଟ୍ ଅର୍ଥନୀତି ଯେପରି ଆଗେଇବାର କଥା ସେପରି ଆଗେଇ ପାରିନଥିଲା । ଯଦିଓ ବିରାଟ ଗୁରୁଶିଳ୍ପ, ଉଦ୍ୟୋଗର ବିକାଶ, ବିରାଟ ବୈଜ୍ଞାନିକ ସାଫଲ୍ୟ, କୋଠଗୃହର ବିକାଶ, ପ୍ରଚଣ୍ଡ ସାମରିକ ଶକ୍ତିର ବିକାଶ ସୋଭିଏଟ୍ ରାଷ୍ଟ୍ରରେ ସାଧିତ ହୋଇଛି । ଖଣିଜତୈଳ, କୋଇଲା, ଇସ୍ପାତ ଉତ୍ପାଦନରେ ୧୯୮୨ ସୁଦ୍ଧା ଏହା ବିଶ୍ୱର ପ୍ରଥମ ରାଷ୍ଟ୍ର ଥିଲା । ମାଛ ମାଂସ ଓ ଦୁଧ ଯୋଗାଉଥିବା ପଶୁମାନଙ୍କୁ ଖାଦ୍ୟ-ଶସ୍ୟ ଖାଇବାକୁ ଦିଆଯାଉଥିବାରୁ ଓ କଠୋର ଶୀତକାଳରେ ଫସଲ ନଷ୍ଟ ହେଉଥିବାରୁ ଖାଦ୍ୟସଙ୍କଟ ହେଉଥିଲା । ତାହା ଛଡ଼ା ବିଶ୍ୱର ୪୯ଟି ରାଷ୍ଟ୍ରକୁ ସୋଭିଏଟ୍ ୟୁନିୟନ୍ ଖାଦ୍ୟଶସ୍ୟ ଯୋଗାଉଥିଲା । ଅନ୍ୟ ପକ୍ଷରେ ସର୍ବହରାର ଏକଛତ୍ରବାଦର ଅର୍ଥ ଶ୍ରମିକ ଶ୍ରେଣୀର ନିରଙ୍କୁଶ ଶାସନ ବ୍ୟବସ୍ଥା ହେବା ବଦଳରେ ପାର୍ଟିର ଏକଛତ୍ରବାଦ ଓ ଏହି ପାର୍ଟିର ଏକଛତ୍ରବାଦ ନାମରେ ଏକ ଗୋଷ୍ଠୀ ବା ବ୍ୟକ୍ତିର ଏକନାୟକତ୍ୱ କାର୍ଯ୍ୟତଃ ହେଲା । ତେଣୁ ପାର୍ଟି ଜନସାଧାରଣଙ୍କର ମଙ୍ଗଳର ସାଧନ ହେବା ପରିବର୍ତ୍ତେ ଏକ ସୁବିଧାଭୋଗୀ ଗୋଷ୍ଠୀର ସ୍ୱାର୍ଥର ବାହକ ହେଲା । ପୁରୁଣା ପୁଞ୍ଜିପତି ଓ ସାମନ୍ତଗୋଷ୍ଠୀ ବଦଳରେ ଗୋଟିଏ କ୍ଷମତାଶୀଳ ଅମଲାତାନ୍ତ୍ରିକ- ବ୍ୟୁରୋକ୍ରାଟ୍ ଗୋଷ୍ଠୀ ସମାଜବାଦୀ ସମାଜରେ ଆଧିପତ୍ୟ ବିସ୍ତାର କଲେ । ପାର୍ଟି ଭିତରେ ଗଣତାନ୍ତ୍ରିକ ପଦ୍ଧତି ଅନୁସୃତ ହେଉନାହିଁ । ରାଷ୍ଟ୍ରର ଦମନର ଯନ୍ତ୍ରକୁ ବିରୋଧିଗୋଷ୍ଠୀ ବିରୋଧରେ ପ୍ରତି କଥାରେ ଲଗାଯାଇଥିଲା ୧୯୫୩ ପୂର୍ବରୁ ଓ ପାର୍ଟି କ୍ରମେ ଜନସାଧାରଣଙ୍କଠାରୁ ଦୂରେଇଗଲା । ସୋଭିଏଟ୍ ସାଂଘାତିକ ପ୍ରତିବିପ୍ଳବ ଘଟି ସମାଜବାଦର ମୂଳୋତ୍ପାଟନ ହେଉଥିବାବେଳେ ପ୍ରାୟ ୨ କୋଟି ପାର୍ଟି ସାଥୀ ତାହାକୁ ମୁଣ୍ଡ ପୋତି ସହିନେବା ସେମାନଙ୍କର ଆଦର୍ଶଗତ ନିଶ୍ଚେଷ୍ଟତା ଓ ସଂଗଠନର ସ୍ଥାଣୁତାର ପରିଚୟ ପ୍ରଦାନ କରେ । ତେଣୁ ପ୍ରତିବିପ୍ଳବର ବିଜୟର କାଳରେ ବଲ୍‌ସେଭିକ୍ ପାର୍ଟିର ସଦସ୍ୟମାନେ ସେମାନଙ୍କର ମାନସିକତାରେ ଏକ ମେକ୍ ବା ସଜ୍ ଭଳି ଘଟଣାକୁ ଦ୍ରଷ୍ଟା ଭାବେ ଦେଖିଲେ । ବର୍ତ୍ତମାନ ସେ ଅବସ୍ଥା ବଦଳିଯାଇଛି ।

ମାତ୍ର ଏହିସବୁ ବିସଙ୍ଗତି କଣ ହେଉଛି ଏକମାତ୍ର କଥା ? ସତରେ ୨୧୭ରୁ ୨୫୦ ଲକ୍ଷ ଟନ୍ ଖାଦ୍ୟଶସ୍ୟ ଉତ୍ପାଦନ କରୁଥିବା ଏହି ଦେଶ ଖାଦ୍ୟାଭାବ ଯୋଗୁଁ କାଙ୍ଗାଳ ଭିକ୍ଷୁକର ଦେଶ ହୋଇଗଲା ! ନାଁ ତା ନୁହେଁ, ଲେନିନ୍ ଓ ଅନ୍ୟ ମହାନ୍ ବିପ୍ଳବୀ—ଯଥା ଗ୍ରାମାଲସି (ଇଟାଲୀର ନେତା) ଓ ରୋଜା ଲକ୍ସମ୍‌ବର୍ଗ ପ୍ରଭୃତିଙ୍କ ନାମ ଧରି, ସେମାନଙ୍କର ଉକ୍ତି ପ୍ରସଙ୍ଗ ବାହାରେ (out of the convex) ବିକୃତ ଭାବେ ଉଦ୍ଧାର କରି ସାମ୍ରାଜ୍ୟବାଦ ପ୍ରେରିତ କେତେ ପଦାରୂଢ଼ କର୍ତ୍ତା ନିଜ ସୋଭିଏଟ୍ ରୁଷ୍‌ର ଧ୍ୱଂସ ପାଇଁ ଓ ଅକ୍ଟୋବର ବିପ୍ଳବର ଜନ୍ମ ଓ ସାଫଲ୍ୟ ସମ୍ବନ୍ଧରେ ପ୍ରଶ୍ନ ଉଠାଇ ଏହାର କ୍ଷୟ ଘଟାଇଲେ ।

ଅକ୍ଟୋବର ବିପ୍ଳବ, ଲେନିନ୍‌ଙ୍କର ଚିନ୍ତାଧାରା (ଯେଉଁଥିରେ ମାର୍କସ୍‌ବାଦୀ ଦର୍ଶନର ରୂପାୟନ ହେଲା) ଓ ସୋଭିଏଟ୍ ରାଷ୍ଟ୍ରସଂଘ ଗଠନକୁ ଭୁଲ "ବିପ୍ଳବର ଗର୍ଭପାତ ବୋଲି ଏକ ପକ୍ଷରେ ଟ୍ରଟସ୍କିବାଦୀ ଅତି ବିପ୍ଳବୀଗୋଷ୍ଠୀ, ନବ୍ୟ କଠୋର-ପନ୍ଥୀ ବାମପନ୍ଥୀ ଚିନ୍ତାଧାରାର ଲୋକେ ଓ ଅନ୍ୟ ଦିଗରେ ସଂସ୍କାରବାଦୀ-ସଂଶୋଧନବାଦୀ ସମାଜବାଦୀମାନେ ଏବଂ ସର୍ବୋପରି ଧନବାଦୀ-ବୁର୍ଜୋୟା ଦର୍ଶନ ତଥା ଅର୍ଥନୀତିର ମତ ବା ଶିକ୍ଷ-ମାନେ କରିଆସିଛନ୍ତି । ସେମାନେ କମ୍ୟୁନିଷ୍ଟ ପାର୍ଟିକୁ ଏକ ନୂଆ ଧରଣର ପାର୍ଟି—(Party of a new type)—ଏହି ଚିନ୍ତାଧାରାକୁ କଦର୍ଥ କରି, ଗୁମୁଆ ବାହିନୀ ବା (Venguar-dism)ର ଭୂମିକାକୁ ଏକ ନୂତନ ଶ୍ରେଣୀ ଯଥା ବ୍ୟୁରୋକ୍ରାଟ୍ ବା ଅମଲାତନ୍ତ୍ରର ଏହା ଜନ୍ମଦାତା ବୋଲି କହିଲେ । ରୁଷିଆ ଥିଲା ଏକ ପଛୁଆ ଶିଳ୍ପୋନ୍ନତ ରାଜ୍ୟ, ଯେଉଁଥିରେ ଶତକଡ଼ା ୬ ଭାଗ ଥିଲେ ଶ୍ରମିକ, ସେଠି ବିପ୍ଳବ ହେବା ଏକ ଅସମ୍ଭବ କଥା ଓ ସେହି ଏକକ ରାଷ୍ଟ୍ରରେ ସମାଜବାଦୀ ସମାଜର ନିର୍ମାଣ (Socialism in one State) ଏକ ଅଳୀକ ତଥା ଅବାସ୍ତବ ପ୍ରସଙ୍ଗ ବୋଲି ଦୁଇ ମହଲରୁ ପ୍ରଚାର ହେଲା । ଅକ୍ଟୋବର ବିପ୍ଳବରେ ଓ ଲାଲସେନା ଗଠନରେ ପ୍ରମୁଖ ଭୂମିକା ନେଇ-ଥିବା ଟ୍ରଟସ୍କି ରୁଷ ବିପ୍ଳବକୁ ସଂପ୍ରସାରିତ କରି ବିଶ୍ୱ ବିପ୍ଳବ ବା (World Revolution) କରିବା ସେଥିପାଇଁ ବିଭିନ୍ନ ଦେଶର ସୀମାନ୍ତର ସରହଦ ଟପି ମାଡ଼ିଚାଲିବାର ବୋନାପାର୍ଟିଷ୍ଟ ତତ୍ତ୍ୱର ବ୍ୟାଖ୍ୟାନ କଲେ, ସେଥିପାଇଁ ମାର୍କସ୍‌ଙ୍କର ଉକ୍ତିର ଆଶ୍ରୟ ନେଲେ । ସେ କମ୍ୟୁନିଷ୍ଟ ପାର୍ଟି ଶ୍ରେଣୀର ନୂଆ ଧରଣର

ପାର୍ଟି ସ୍ୱଭାବରେ ପ୍ରମୁଖ ଭୂମିକାକୁ ବନ୍ଦୀ କରି ପାର୍ଟି ସଂଗଠନ ଯନ୍ତ୍ର ତଳେ ଏକ ଦାନ ବା ବୃତ୍ତି—ଅମଲାତନ୍ତ୍ର ଗଢ଼ିଉଠିବ ଓ ତାହା ବିପ୍ଳବର ସୁଫଳକୁ ଗ୍ରାସ କରିଦେବ ବୋଲି ନିଜ ପୁସ୍ତକ "Revolution Betrayed" ରେ କହିଲେ । କିନ୍ତୁ ସେ ମଧ୍ୟ ଲେନିନ୍‌ଙ୍କର ନେପ୍ (NEP) ନୀତିଧାରାର ବିରୋଧ କରେ । ସେ ଥିଲେ ଏ ଦେଶର ସମାଜବାଦକୁ ମଡ଼େଲ କରିବା ଧାରାର ବିରୋଧୀ ।

ୟୁରୋପର ଦ୍ୱିତୀୟ ଆନ୍ତର୍ଜାତିକ ଓ ଅଢ଼େଇଗୋଡ଼ିଆ ହେଗରେ ଅବସ୍ଥାପିତ (Two and half International ଇଣ୍ଟରନ୍ୟାସନାଲ ଓ ଜର୍ମାନୀର ବର୍ଣ୍ଣଷ୍ଟେଇନ୍ ପ୍ରଭୃତି ତତ୍ତ୍ୱବିତ୍-ମାନଙ୍କ କଥାକୁ ବାଦଦେଲେ ମଧ୍ୟ, ଇଟାଲୀ କମ୍ୟୁନିଷ୍ଟ ପାର୍ଟିର ପ୍ରାଣ ପ୍ରତିଷ୍ଠାତା ଗ୍ରାମସାଇ (Gramsai) ନିଜର ଲେଖାରେ ଅକ୍ଟୋବର ବିପ୍ଳବର ସମ୍ଭାବ୍ୟତା ସମ୍ବନ୍ଧରେ ପ୍ରଶ୍ନ ଉଠାଇ-ଥିଲେ, ଯାହାକୁ ଆଜି ଉଦ୍ଧାର କରି ସୋଭିଏତ୍ ମାଟିରେ ଅକ୍ଟୋବର ବିପ୍ଳବ ଓ ଲେନିନ୍‌ଙ୍କର legacy—ଗୌରବ-ମୟ ପରଂପରାକୁ ଚ୍ୟାଲେଞ୍ଜ କରାଯାଉଛି । ଗ୍ରାମସାଇ କହିଲେ, "October Revolution became victorious, alright, but that is a Revolution against Das Capital", ତାର ମାନେ "ଅକଟୋବର ବିପ୍ଳବ ଜୟଯୁକ୍ତ ହେଲା ଭଲ କଥା, ମାତ୍ର ହେଉଛି ମାର୍କସ୍‌ଙ୍କର" ଦାସ୍ କ୍ୟାପି-ଟାଲର ପରିପନ୍ଥୀ । ତାର କାରଣ ମାର୍କସ୍ ଜର୍ମାନୀ, ଫ୍ରାନ୍ସ ଓ ବ୍ରିଟେନ ଭଳି ଶିଳ୍ପୋନ୍ନତ ଓ ବିକାଶ ପ୍ରାପ୍ତ ପୁଞ୍ଜିବାଦୀ ରାଷ୍ଟ୍ରରେ ବିପ୍ଳବ ଆଗ ହେବ ବୋଲି ଆଶାପୋଷଣ କରିଥିଲେ । ୟୁରୋପର ସବୁଠାରୁ ଅଧିକ ଅନୁନ୍ନତ ପୁଞ୍ଜିବାଦୀ ଦେଶରେ ସମାଜବାଦୀ ବିପ୍ଳବର ବିଜୟ ଓ ସର୍ବହରାର ଶାସନ ପ୍ରତିଷ୍ଠା ଅସମ୍ଭବ ବୋଲି ଯେଉଁମାନେ କହୁଥିଲେ, ସେମାନେ ମାର୍କସ୍‌ଙ୍କ ଉକ୍ତିର ଯାନ୍ତ୍ରିକ ପ୍ରୟୋଗ କରୁଥିଲେ । "ସାମ୍ୟବାଦର ସାଧନା କ୍ଷେତ୍ର ରୂପେ ସୋଭିଏଟ୍ ରାଷ୍ଟ୍ର ସଂଘର ପ୍ରତିଷ୍ଠା କରିବା" ଓ "ଜାତିମାନଙ୍କର ବନ୍ଦୀଶାଳା" ଥିବା ରୁଷ ସାମ୍ରାଜ୍ୟର ସବୁ ଜାତି ଓ ଅଞ୍ଚଳକୁ ଆତ୍ମନିୟନ୍ତ୍ରଣର ଅଧିକାର ଦେବା ଥିଲା ଲେନିନ୍‌ଙ୍କର ଲକ୍ଷ୍ୟ । ସେହିପରି ରୁଷର ବାସ୍ତବ ପରିସ୍ଥିତି ଯୋଗୁଁ ଜୋର୍‌ଜବରଦସ୍ତି କୋଠଚାଷ ବ୍ୟବସ୍ଥା ଓ ବିଶାଳ ଶିଳ୍ପର ପ୍ରତିଷ୍ଠା ଲେନିନ୍‌ଙ୍କର ଲକ୍ଷ୍ୟ ନଥିଲା । ଶିଳ୍ପକୁ କୃଷି ବିକାଶ ସହିତ ମୁହାଁମୁହିଁ (Counterpose) କରୁନଥିଲେ । ତେଣୁ ନୂତନ ମଡ଼େଲର ସମାଜବାଦ ଗଠନରେ ଓ ରାଷ୍ଟ୍ରପୁଞ୍ଜିର ରୂପାୟନରେ ଯେଉଁ ବୈକଲ୍ୟ ରହିଗଲା, ତାକୁ ସଂଶୋଧନ କରିବାର କଥା ଥିଲା । Wer Communismକୁ ପ୍ରସାରିତ ପ୍ରଶାସନିକ ହୁକୁମ୍‌ଜାରି ବ୍ୟବସ୍ଥାର (Adminstrative-Command System) ପ୍ରଚଳନ ଦ୍ୱାରା ଏକ ଶକ୍ତ ସୋଭିଏତ୍ ରାଷ୍ଟ୍ର ଗଢାଯାଇପାରିଲା ସତ୍ୟ, ମାତ୍ର ତାହାର ବିସଂଗତ ପରିଣାମ ସ୍ୱରୂପ ଜନସାଧାରଣ ଓ ବିଶେଷତଃ ମେହନତି ଜନସାଧାରଣଙ୍କ ଭିତରୁ ଏକ ସକ୍ରିୟତାର ଦ୍ୟୋତନା ଏବଂ ମତାଦର୍ଶଗତ ମନ୍ଥନର ଅଭାବରୁ ଏକ ତାତ୍ତ୍ୱିକ-ରାଜନୈତିକ ଶୂନ୍ୟତା ସୋଭିଏଟ୍ ଓ ପୂର୍ବ ୟୁରୋପର କମ୍ୟୁନିଷ୍ଟ ସମାଜକୁ ଛାନିଆ କରିଥିଲା । ତେଣୁ ସମାଜବାଦରୁ ଲବ୍ଧ ନୂତନ ସଭ୍ୟତାର ଲାଭ ସମ୍ବନ୍ଧରେ ଜନସାଧାରଣ ସଚେତନ ହୋଇ ପାଶ୍ଚାତ୍ୟ ଅର୍ଥ-ପୁଞ୍ଜି ସମାଜର ଚକ୍‌ଚକ୍ Consumer goods ପ୍ରତି ଏକ ଆକର୍ଷଣ ବଢ଼ି ଚାଲିଥିଲା । ତେଣୁ ଛଦ୍ମବେଶୀମାନେ ଲେନିନ୍, ଗ୍ରାମଲଟି, ରୋଜା ଲକ୍‌ସମ୍ ବର୍ଗଙ୍କର ଦୁଆଧାର ଏକ ପ୍ରତି ବିପ୍ଳବ ସୃଷ୍ଟି କଲେ । ସେମାନଙ୍କ କବଳରୁ, ସାମ୍ରାଜ୍ୟ-ବାଦୀ ପ୍ରଚାରରୁ ଜନସାଧାରଣଙ୍କୁ ରକ୍ଷା କରିବାକୁ ସେଠାରେ ପାର୍ଟି ଓ ମତାଦର୍ଶଗତ ଅଭିଯାନ ନଥିଲା । ସମାଜ ଏକ ଅନ୍ଧ ଗଳିର ମୁହଁରେ ପହଞ୍ଚି ସାରିଥିଲା, ସମାଜବାଦୀ ବିପ୍ଳବର ସୁଫଳକୁ, ତାହା ସକଳ ଶୋଷିତ ଓ ମେହନତକାରୀ ଜନ-ସାଧାରଣଙ୍କୁ ଦେଇଥିବା କ୍ଷୁଧା, ଦାସତ୍ୱ ଓ ନିପେଷଣର ମୁକ୍ତିର କଥାକୁ ପ୍ରଚାର ନକରି ୧୯୮୫ ଠାରୁ ଗାଳି ଏକତରଫା ଭାବେ ବିସଂଗତି ଓ ବୈକଲ୍ୟର ପ୍ରଚାର ଚାଲିଲା ଅତିରଞ୍ଜିତ ଭାବେ । ସମାଜବାଦୀ ବ୍ୟବସ୍ଥା ସବୁ ମଣିଷକୁ କାମ, ଖାଦ୍ୟ, ବାସ ଓ ସମାଜର ନିରାପତ୍ତା କଥାକୁ ଆଉ କୁହାଗଲା ନାହିଁ । ଉନ୍ମୁକ୍ତତା ନାମରେ ସାମ୍ରାଜ୍ୟବାଦକୁ ସୁହାଉଥିବା ଚରମ କମ୍ୟୁନିଷ୍ଟ ବିରୋଧୀ ପ୍ରଚାର ଚାଲିଲା । ପୁନର୍ଗଠନ ଓ ସଂସ୍କାର ନାମରେ ଶିଳ୍ପର ଘରୋଇକରଣ, ମୁକ୍ତ ଅର୍ଥନୀତି ନାମରେ ନୂତନ ଶୋଷଣ ଶ୍ରେଣୀର ସୃଷ୍ଟି ଓ ଅର୍ଥ ପୁଞ୍ଜି ଭିତ୍ତିକ ବଜାର ଅର୍ଥନୀତି କଥା କୁହାଗଲା । ମାତ୍ର ସମାଜବାଦର ସୁଫଳସ୍ୱାଦ ପଡ଼ିଥିବା ଦେଶରେ ଏସବୁ ଅକାମୀ ହୋଇ ଦରଦାମ୍ ଆଜି ୨୦ ଗୁଣ ବଢ଼ିଛି । ମୁଦ୍ରାସ୍ଫୀତି ପ୍ରବଳ ଭାବେ ଆଗେଇ ଚାଲିଛି । ସବୁ ସାଧାରଣତନ୍ତ୍ରକୁ ଏକ ସମାଜବାଦୀ ଆଦର୍ଶରେ ବାନ୍ଧି ରଖିଥିବା ବା ଗ୍ରଥିତ କରିଥିବା ମତବାଦର ଅଭାବରେ ସମାଜବାଦ, ଜାତି-ଜାତି ମଧ୍ୟରେ ସଂଘର୍ଷ, ଭ୍ରାତୃହତ୍ୟା, ଜର୍ଜିଆ ଭଳି ରାଜ୍ୟରେ ଗୃହଯୁଦ୍ଧ ଚାଲିଛି ଅବାରିତ ଗତିରେ ।

ମାର୍କିନ ସାହାଯ୍ୟ ପାଇଁ ନିଜ ଦେଶର ବିକାଶ କରିବେ ବୋଲି ମସ୍‌ଗୁଲ ଥିବା ଚେକୋସ୍ଲୋଭାକିଆଙ୍କର ହାଭେଲ ଓ ଓ ପୋଲାଣ୍ଡର ୱାଲେସା ଦେଖିଲେଣି ମାର୍କିନ ସାହାଯ୍ୟର ସ୍ୱରୂପ । ବିଶ୍ୱର ସବୁଠାରୁ ଋଣୀ ବା ଧାରୁଆ ଦେଶ ଆମେରିକା କିଛି Consumer goods ଛଡ଼ା ଆଉ କି ସାହାଯ୍ୟ ଦେବ ? ପୁଞ୍ଜିପତି ଧନକୁବେରମାନେ ହୃଦୟ ପରିବର୍ତ୍ତନ ଘଟି କିଛି

ସାଧୁ-ସନ୍ଥ ପାଲଟି ଯାଇନାହାନ୍ତି । ଅନ୍ୟ ଦେଶର ବଜାରକୁ କରଗତ କରି, ସେମାନଙ୍କ ଅର୍ଥନୀତିକୁ ଧ୍ୱଂସ କରି, ମୁଦ୍ରାର ମୂଲ୍ୟକୁ ହ୍ରାସ କରି ଆମେରିକା ନିଜର ପୁଞ୍ଜିପତିଙ୍କ ମୁନାଫାକୁ ବଢ଼ାଇବାକୁ ଚାହେଁ ଓ ମୁଦ୍ରା-ଡ଼ଲାରକୁ ମଜବୁତ୍ କରିବାକୁ ଚାହେଁ । ନିର୍ବୋଧମାନେ ଏ କଥାକୁ ଦେଖିପାରୁନାହାନ୍ତି । ଆଜି ସମଗ୍ର ବିଶ୍ୱ ଏକ ମେରୁବିଶିଷ୍ଟ ବିଶ୍ୱ—Unipolar Worldର ଆଧିପତ୍ୟର ପଥରେ ଚଳେ । ମାତ୍ର ତାହା କେତେଦିନ ! ଆମେରିକା, ଜାପାନ ଓ ଜର୍ମାନୀର ପ୍ରମୁଖ ଆର୍ଥିକ ଚ୍ୟାଲେଞ୍ଜର ସମ୍ମୁଖୀନ । ବିଶ୍ୱବଜାରକୁ ଜାପାନ ଶସ୍ତାରେ ଜିନିଷ ଛାଡ଼ୁଛି । ଆମେରିକା ପ୍ରତିଯୋଗିତାରେ ହାରିଯାଉଛି । ତାର ଡ଼ଲାରର ବିନିମୟ ହାରକୁ କମାଇବାକୁ ଜାପାନର ଦାବି । ଆମେରିକାର ନିଜର ଋଣ ୨୦୦୦ ବିଲିୟନ୍ ଡଲାରରୁ ଅଧିକ । ସେଠି ୧ କୋଟି ୭୦ ଲକ୍ଷ ଲୋକ ବେକାର । ମହାକାଶଗୃହ ଗ୍ରସେରୀ ଦୋକାନରେ ବିକ୍ରେତା । ଗୃହହୀନ ଭିକ ମେଟ୍ରୋରେ ସଢ଼ି-ମରୁଛନ୍ତି ନିଗ୍ରୋ । ଏକ ପକ୍ଷରେ ସମୃଦ୍ଧିର ଗଗନଚୁମ୍ବୀ ପ୍ରାସାଦ, ଅନ୍ୟ ପକ୍ଷରେ ଦାରିଦ୍ର୍ୟର ଅନ୍ଧକାର-ଅତଳ—ଗହ୍ୱର ତାହାର ଦେଶ ଆମେରିକା । ସେଉଁଠି ପ୍ରତି ମିନିଟ୍‌ରେ ହତ୍ୟା, ଲୁଣ୍ଠନ, ନାରୀଧର୍ଷଣ, ଚୋରି, ଡ଼କାୟତି, ସନ୍ତ୍ରାସ ଓ ଅଶ୍ଳୀଳତାର ପ୍ରଦର୍ଶନ, ନାରୀର ଶରୀର ବିକ୍ରି ହେଉଛି ଅବିରତ । ଆଜି ସେଇମାନେ ରୁଷିଆରେ ସାମ୍ୟବାଦର ବିପର୍ଯ୍ୟୟ କଥା କହି ଆମ ଦେଶର ଅର୍ଥନୀତିକୁ କରଗତ କରିବାକୁ ଆଗେଇ ଆସି-ଛନ୍ତି । ସମାଜବାଦର Demerit—ଅସାରତା ପ୍ରତିପାଦନ କରିବାକୁ ସବୁ ଦେଶରେ ସେମାନଙ୍କର ଅର୍ଥଲୁବ୍ଧ ଅର୍ଥନୀତିଜ୍ଞ, ସାମ୍ବାଦିକ ଓ ଲେଖକ ପୋଷା ହୋଇ ରହିଛନ୍ତି ।

## ସାଂପ୍ରତିକ ଅବସ୍ଥା—ପୂର୍ବତନ ସମାଜବାଦୀ ଦେଶରେ

"Revolution is the Lucomotive
of the civilization".

ବିପ୍ଳବ ସଭ୍ୟତା ନାମକ ରେଳଗାଡ଼ିର ଇଞ୍ଜିନ୍ ।

ସମାଜବାଦୀ ବ୍ୟବସ୍ଥାକୁ ଗଣତନ୍ତ୍ର ନାମରେ ପୁଞ୍ଜିବାଦୀ ଅର୍ଥନୈତିକ ବ୍ୟବସ୍ଥା, ରାଷ୍ଟ୍ରାୟତ୍ତ ଶିଳ୍ପର ଘରୋଇକରଣ, ପୁଞ୍ଜି-ପତି ମୁନାଫାର ସୂତ୍ର 'ମୁକ୍ତବଜାର ଅର୍ଥନୀତିର ରାସ୍ତାକୁ ଯାଇ-ଥିବା ଦେଶମାନଙ୍କର ବର୍ତ୍ତମାନ ଅବସ୍ଥା କଣ ? ନାହିଁ ସେଠି ସମାଜବାଦର ସାମାଜିକ ନିରାପତ୍ତା, ପ୍ରତି ମଣିଷକୁ କାମ, ଖାଦ୍ୟାଭାବ ଉତ୍କଟତର, ମୁନାଫାଖୋରି-କଳାବଜାର ଗୁଡ଼ିଏ ଅବାରିତ, ଖାଦ୍ୟାଭାବ, ଶୀତ, ଚିକିତ୍ସାର ଅଭାବରେ ସଢ଼ି-ମରୁଛନ୍ତି, ରୁଷୀୟ ଫେଡ଼େରେସନ୍, ପୋଲାଣ୍ଡ-ହଙ୍ଗେରୀ, ଚେକୋସ୍ଲୋଭାକିଆ ଓ ଜର୍ମାନୀରେ ମିଶିଥିବା ପୂର୍ବ-ଜର୍ମାନୀର ଜନ-ସାଧାରଣ । ବିଗତ ଦିନରେ ପୋଲାଣ୍ଡରେ ଲେଚ୍ ୱାଲେସାଙ୍କର ଅନୁଗତ ସଲିଡ଼ାରିଟି ପାର୍ଟି ମାତ୍ର ୮ ପ୍ରତିଶତ ଭୋଟ ପାଇଥିବା ବେଳେ କମ୍ୟୁନିଷ୍ଟମାନେ ୧୩ ଭାଗ ଭୋଟ ପାଇ ପ୍ରଥମ ଧାଡ଼ିକୁ ଚାଲିଆସିଛନ୍ତି । ବର୍ଲିନରେ ୧୯୯୦ ଅକ୍ଟୋବରରେ ମହମବତୀ ଜାଳି ହେଲମଟ୍ କୋହଲ୍‌ଙ୍କୁ ବନ୍ଦାପନା କରିଥିବା ଲୋକେ ୧୯୯୧ ଅକ୍ଟୋବରରେ ପଚିଶ ହଜାର ସଂଖ୍ୟାରେ ଆସି ପଚା ଅଣ୍ଡା, ଟମାଟୋ ଫୋପାଡ଼ି ତାଙ୍କୁ ସ୍ୱାଗତ କରିଛନ୍ତି । ଆଜି ପଶ୍ଚିମ-ଜର୍ମାନୀ ସମସ୍ୟା ଏପରି ହୋଇଛନ୍ତି ତାଙ୍କ ଦଳ ତାଙ୍କର ନିଜ ପ୍ରଦେଶ ନିର୍ବାଚନରେ ମୂଳପୋଛ ହୋଇଯାଇଛି । ଏବେ ପୋଲିସ୍ ନେତା ଓ୍ୱେଲ୍‌ସା ପାଶ୍ଚାତ୍ୟ ଶକ୍ତି "ତାଙ୍କ ଦେଶରେ ଫଳମଳ ପଣ୍ୟଦ୍ରବ୍ୟର ବନ୍ୟା କରିଛନ୍ତି । ମାତ୍ର ସେ ଦେଶର ଅର୍ଥନୀତିର ଶ୍ରୀବୃଦ୍ଧି ପାଇଁ କିଛି କରିନାହାନ୍ତି । ଜିନିଷ କିଣିବାକୁ ପଇସା ନାହିଁ ।

ରୁଷିଆ ଅବସ୍ଥା ସାଂଘାତିକ । ଲକ୍ଷ ଲକ୍ଷ ଜନସାଧାରଣ ଲାଲ ପତାକା, ଲେନିନ୍‌ଙ୍କର ଫଟୋ ଧରି, ମସ୍କୋ, ଲେନିନ୍‌ଗ୍ରାଡ଼, ଖାରକୋଭ ପ୍ରଭୃତି ରାଜରାସ୍ତାକୁ ବାହାରି ଆସିଛନ୍ତି । ମୁକ୍ତ-ବଜାର ଓ ପୁଞ୍ଜିବାଦୀ ଅର୍ଥନୈତିକ ବ୍ୟବସ୍ଥା ଫଳରେ ବଜାରରେ ଖାଉଟି ଜିନିଷର ମୂଲ୍ୟ ପାଞ୍ଚଗୁଣ । ସାହାଯ୍ୟ ନାମରେ ବ୍ରିଟେନ୍‌ରୁ ଆସିବ ରୋଗଗ୍ରସ୍ତ ବା ମଲାପଶୁଙ୍କର ମାଂସକୁ ଲୋକେ ଫେରାଇଦେଇଛନ୍ତି । ସୋଭିଏଟ୍ ସମାଜର ନମୁନା ପିଲ୍ଲୁକା ଲାଲସେନାର (Red Army) ଅଧ କୋଟି ସୈନ୍ୟ ଓ ସେନାପତି କ୍ରୋଧ ଓ ଅସନ୍ତୋଷରେ ଅଧୀର । ୨୨୦୦ ସେନାପତି ପାଲେସ୍ ଅଫ୍ କଂଗ୍ରେସରେ ତଥାକଥିତ ରାଜ୍ୟଗୋଷ୍ଠୀରେ ଏକ ସେନାମି ଏକ ଦେଶ ଦାବି କରିଛନ୍ତି । କର୍ମଚାରୀ ନିୟମିତ ଦରମା ପାଉନାହାନ୍ତି । ପ୍ରବଳ ଶୀତ, ତୁଷାରପାତ ପ୍ରବଳ, ନାହିଁ ଇନ୍ଧନ, ଖାଦ୍ୟ ଓ ଶୀତ ଲୁଗା, ଯୋଗାଣ ପ୍ରବଳ ଅଭାବ । ରୁଷିଆରେ ଆଜି କେହି ନେତୃତ୍ୱ ବା ପାର୍ଟି ନାହିଁ ଯେ ଦେଶକୁ ସର୍ବଗ୍ରାସୀ ଧ୍ୱଂସଗ୍ରାସରୁ ରକ୍ଷା କରିବ । ରୁଷିଆର ଉପ-ରାଷ୍ଟ୍ରପତି ଓ ଅାଫଗାନ୍ ଯୁଦ୍ଧର ଲଢ଼ୁଆ ଯୋଦ୍ଧା ଆଲେକଜାଣ୍ଡ୍ରରଙ୍କ ରୁସ୍କୋଇକୋଲ 'ୟେଲସିନ୍ ରୁଷିଆକୁ ଧ୍ୱଂସର ରାସ୍ତାରେ ନେଇଯାଇଛନ୍ତି ବୋଲି ଦୋଷା-ରୋପ କରିଛନ୍ତି ।' ପ୍ରଭଦା କାଗଜରେ ପ୍ରକାଶିତ ବିବୃତିରେ ସେ ୟେଲ୍‌ସିନ୍‌ଙ୍କର ଅର୍ଥନୈତିକ କାର୍ଯ୍ୟକ୍ରମ ରୁଷିଆକୁ ବିପର୍ଯ୍ୟସ୍ତ ଓ ଧ୍ୱଂସ କରିବ ବୋଲି କହିଛନ୍ତି । ସୋଭିଏଟ୍ ରାଷ୍ଟ୍ରସଂଘର ବିଲୟ ଭଳି ରୁଷ୍ ସାଧାରଣତନ୍ତ୍ର ବିନଷ୍ଟ ହେବ ବୋଲି ସେ ଭବିଷ୍ୟତବାଣୀ ଶୁଣାଇଛନ୍ତି । ୧୦୦ରୁ ଊର୍ଦ୍ଧ୍ୱ ଜାତି-ଉପଜାତି ରୁଷିଆରୁ ଅଲଗା ହେବେ ବୋଲି ଆନ୍ଦୋଳନ

ଚଳାଇଛନ୍ତି । ତଥାକଥିତ କୋହଳ ଅର୍ଥନୀତି ଫଳରେ ଦରଦାମ୍ ଅସହ୍ୟ ଭାବେ ଯେପରି ବଢ଼ିଚାଲିଛି, ତା ବିରୁଦ୍ଧରେ କ୍ରୁଦ୍ଧ ଜନମତ ଲାଲ ପତାକାର ଅବାରିତ ସ୍ରୋତ ଛୁଟାଇଲାଣି । ଏପରିକି ରୁଷ ପାର୍ଲିଆମେଣ୍ଟର ବାଚସ୍ପତି ୟେଲ୍ତିସିନ୍ଙ୍କ ଇସ୍ତଫା ଦାବୀ କରିଛନ୍ତି । ଏହା ଆରମ୍ଭ ମାତ୍ର । ଆରମ୍ଭର ଆରମ୍ଭ ମାତ୍ର । ଯେବେ ୟେଲ୍ତିସିନ୍ଙ୍କ ପ୍ରତି ବିପ୍ଳବୀ ଶିବିର ଛନ୍ଦଚ୍ଛୁକ ହେବାକୁ ବସିଛି । ମୁଦ୍ରାସ୍ଫୀତି, ଦରଦାମ ବୃଦ୍ଧି, କଳାବଜାର, ଫାଟକା ବଜାର, ବେଶ୍ୟା-ଅପରାଧର ଦେଶ ହୋଇଛନ୍ତି ପୂର୍ବତନ ସୋଭିଏତ୍ର ସାଧାରଣତନ୍ତ୍ରମାନେ । ଏହା ହେଲା ଗଣତନ୍ତ୍ର, ସଂସ୍କାର, ପୁନର୍ନିର୍ମାଣର ପ୍ରକୃତ ସ୍ୱରୂପ । ମାଫିଆ ସାମ୍ରାଜ୍ୟବାଦର ଏଜେଣ୍ଟମାନେ ରୁଷର ପ୍ରକୃତ ଶାସକ । ଜନସାଧାରଣ ଏବେ ସଜାଗ ହୋଇଛନ୍ତି । ଏକ ବିସ୍ଫୋରଣର ବେଳ ଆସନ୍ନ । ସମାଜବାଦୀ ଆଦର୍ଶର ଶିକ୍ଷାର ଅଭାବ ଦେଢ଼କୋଟି ପାର୍ଟି ସଭ୍ୟମାନଙ୍କର ସତର୍କତା ଓ ସଚେତନତାର ଅଭାବ ଯୋଗୁଁ ଯେଉଁ ବିପର୍ଯ୍ୟୟ ଘଟିଯାଇଛି, ସେହି ଅମାରାତ୍ରିର ପକ୍ଷଚ୍ଛେଦନ କରି ବିପ୍ଳବର ଶକ୍ତି ବିଭିନ୍ନ ରାସ୍ତାରେ ସଂଗ୍ରାମ ଆରମ୍ଭ କରିଛନ୍ତି । ଅତୀତର ଭୁଲରୁ ଶିକ୍ଷା କରିବାର ବେଳ ଆସିଛି । ଦୁନିଆର ପ୍ରଥମ ସମାଜବାଦୀ ମହାଶକ୍ତି ସୋଭିଏତ୍ ଦେଶ ମତାଦର୍ଶ ଅଭାବରୁ ଖଣ୍ଡ ଖଣ୍ଡ ହୋଇ ସାମ୍ରାଜ୍ୟବାଦର ଗୋଲାମ୍ ରାଷ୍ଟ୍ର ସଂଘରେ ପରିଣତ ହେବାର ଦୁର୍ଘଟଣାର ସ୍ୱରୂପକୁ ସେ ଦେଶର ଜନସାଧାରଣ-ଶ୍ରମିକ-କୃଷକ, ବୁଦ୍ଧିଜୀବୀ ଓ ଖୋଦ୍ ରହିଥିବା ଲକ୍ଷ ଲକ୍ଷ ପାର୍ଟି ସଭ୍ୟ ଓ ତାର ଲାଲସେନା ବେଶୀ ଦିନ ଯେ ବରଦାସ୍ତ କରିବେ ନାହିଁ ଓ ନୀଳବର୍ଣ୍ଣ ଶୃଗାଳ ୟେଲ୍ତିସିନ୍ର ରାଜୁତିର ଦିନ ସରି ସରି ଆସୁଛି । ୧୯୬୭ ମସିହାରୁ ଆମେରିକାର ଗୋଇନ୍ଦା ବିଭାଗ ଦ୍ୱାରା ଉଚ୍ଚ ପଦରେ ଥିବା ଲୋକଙ୍କୁ ସେ ଦେଶରେ ଯେପରି ପୋଷଣ କରାଯାଇଥିଲା, ସେମାନେ ସମାଜବାଦୀ ବ୍ୟବସ୍ଥାରେ ଦୀର୍ଘଦିନର ରହିଥିବା ବିସଂଗତି, ବିଚ୍ୟୁତି ବୈକଲ୍ୟର ସୁଯୋଗ ନେଇ କ୍ଷମତାର ବିଭିନ୍ନ ଆସ୍ଥାନ ମାଡ଼ିବସିଛନ୍ତି । ଗୋର୍ବାଚେଭ୍ଙ୍କ ୭ ବର୍ଷର ନେତୃତ୍ୱର ଦିନରେ କମ୍ୟୁନିଷ୍ଟ ପାର୍ଟି, ସୈନ୍ୟବାହିନୀ, ଅର୍ଥନୀତି ଓ ବିଭିନ୍ନ ଅନୁଷ୍ଠାନରେ ଭିତ୍ତିଭୂମିକୁ ସୁଚିନ୍ତିତ ଭାବେ ନଷ୍ଟକରି ଦିଆଯାଇଛି । ସମାଜବାଦର ଭିତ୍ତି ଉପରେ ଭିତ୍ତିକରି ଗଣତାନ୍ତ୍ରିକ ଅଧିକାର, ଆଇନର ଶାସନ ଓ ପ୍ରୋତ୍ସାହନ ଦାନ ଇତ୍ୟାଦି କରାଯାଇପାରିଥାନ୍ତା । ମାତ୍ର ପ୍ରଥମରୁ ଲେନିନ୍ଙ୍କ ନାମ ଧରି, ମାନବିକତାର ମୁଖାପିନ୍ଧି, ସଂସ୍କାର ନାମରେ ଉନ୍ମୁକ୍ତତା ଓ ପୁନର୍ଗଠନ ନାମରେ ଏକ ବିରାଟ ବିଶ୍ୱଜୟୀ ବ୍ୟବସ୍ଥାକୁ ଧ୍ୱଂସ ଆଡ଼କୁ ଟାଣି ନିଆଗଲା, ତାହା ପ୍ରତିଟି କମ୍ୟୁନିଷ୍ଟ ଭଲ ଭାବେ ହୃଦୟଙ୍ଗମ କରିବା ଆବଶ୍ୟକ । ତାର ମାନବିକ ଅଧିକାର, ଗଣତନ୍ତ୍ର, ବ୍ୟକ୍ତି ସ୍ୱାଧୀନତା ଓ ଆଇନ ଶାସନର ଧାରା ଯେପରି କମ୍ୟୁନିଷ୍ଟ ଅଭିଧାନରେ ନଥିଲା !! ସର୍ବହରାର ଏକନାୟକତ୍ୱ, ଗଣତାନ୍ତ୍ରିକ କେନ୍ଦ୍ରବାଦ, ସର୍ବହରାର ଆନ୍ତର୍ଜାତିକତା, ଜନସାଧାରଣଙ୍କର ଉତ୍ପାଦନ ଯନ୍ତ୍ର ନଷ୍ଟ ଉପରେ ମାଲିକାନା, ନବ ସ୍ୱାଧୀନ — ଅର୍ଦ୍ଧ ପରାଧୀନ ଦେଶମାନଙ୍କ ଉପରେ ସାମ୍ରାଜ୍ୟବାଦର ଆକ୍ରମଣରେ ପ୍ରତିରୋଧର ସମସ୍ତ ଅଭିପ୍ସାକୁ କ୍ରମାନ୍ୱୟ ଭାବେ ଧ୍ୱଂସ କରି ଦିଆଗଲା । ଅବଶ୍ୟ ବିଶ୍ୱଶାନ୍ତି ପରମାଣୁ ଆତ୍ମହତ୍ୟାର ଆଶଙ୍କାର ପ୍ରଶମନ, ଇତ୍ୟାଦି କେତୋଟି ଗଠନମୂଳକ ପଦକ୍ଷେପ ବିଗତ ସାତ ବର୍ଷରେ ହୋଇଛି । ମାତ୍ର ୟେଲ୍ତିସିନ୍ଙ୍କ ସମ୍ମିଳନୀ, ବ୍ରେଜନେଭ୍-ନିକସନ୍ଙ୍କର ଭ୍ଲାଡ଼ିଭଷ୍ଟକ ଘୋଷଣା ଓ ଷ୍ଟ୍ରାଟେଜିକ୍ ଆର୍ମସ୍ ଲିମିଟେସନ୍ ଟ୍ରିଟି (START) ପ୍ରଭୃତିରେ ଫଳପ୍ରସୂ ବ୍ୟବସ୍ଥା ଆଗରୁ ସୋଭିଏତ୍ ରୁଷ୍ ନେଇଆସିଥିଲା । ସୋଭିଏତ୍ ୟୁନିୟନ୍ର ଚରମ ପରୀକ୍ଷାର ବେଳ ଆସିଲା ଉପସାଗରୀୟ ଯୁଦ୍ଧ (Gulf War) ବେଳେ, ଯେତେବେଳେ କୁଏତ୍ରୁ ଆକ୍ରମଣକାରୀଙ୍କୁ ହଟାଇବା ନାମରେ ଆମେରିକା ଓ ତାର ମିତ୍ର ଶକ୍ତି ଏକ କ୍ଷୁଦ୍ର ତାରକା ଯୁଦ୍ଧ (Mini Star War) ସଂଘଟିତ କରି ପଞ୍ଚ ସଭ୍ୟତାର ଦେଶ (Land of Five Civilisation) ଇରାକ୍କୁ ଧ୍ୱଂସବିଧ୍ୱସ୍ତ କରି ଲକ୍ଷ ଲକ୍ଷ ଜନସାଧାରଣଙ୍କୁ ହତ୍ୟା କଲେ, ଗୋର୍ବାଚେଭ୍ ନେତୃତ୍ୱ କେବଳ ନୀରବଦ୍ରଷ୍ଟା ହୋଇ ରହିଲା ନାହିଁ, ବରଂ ଆମେରିକାର ଜୟଗାନ କଲା । କ୍ୟୁବା, ଭିଏତ୍ନାମ୍, ଇଥିଓପିଆକୁ ସାହାଯ୍ୟ ପ୍ରଦାନ ବନ୍ଦ ଇତ୍ୟାଦି କେବଳ ଆମେରିକାକୁ ଖୁସି କରିବା ପାଇଁ ଅଭିପ୍ରେତ ଥିଲା । ବିଶେଷତଃ ସପ୍ତବିଂଶ ସୋଭିଏତ୍ ପାର୍ଟି କଂଗ୍ରେସର ଦଲିଲରୁ "ସାମ୍ରାଜ୍ୟବାଦ" ଶବ୍ଦଟି ମଧ୍ୟ ଉଭେଇଗଲା ।

ଆଜି ପରିସ୍ଥିତି ଭିନ୍ନ । ରୁଷିଆ ବା ପୂର୍ବ ୟୁରୋପରେ ଆଉ Coup ବା ସାମରିକ ବିଦ୍ରୋହ ବା କାଁ ଭାଁ ପ୍ରତିରୋଧ ହେବନାହିଁ । ଆସିବ ବିପ୍ଳବର ପୁବେଇ ଝଡ଼ । ପୂର୍ବତନ ସୋଭିଏତ୍ ବୈଦେଶିକ ମନ୍ତ୍ରୀ ସେଭର୍ଦ୍ଦନା ଜାଦେ କହିସାରିଲେଣି । ଜେଲଖାନା ଭିତରୁ ମାର୍ଶାଲ ୟାଜୋଭ୍ ଏକ ତରଫା ଅସ୍ତ୍ରଶସ୍ତ୍ର କାଟର ବିଲୋପ କରି ଲେଖୁଛନ୍ତି । ଜନପ୍ଳାବନର ପ୍ରଚଣ୍ଡ ତୋଫାନ୍ ମାଡ଼ିଆସୁଛି ରୁଷ୍ ଓ ଅନ୍ୟ ପୂର୍ବତନ ସୋଭିଏତର ପ୍ରାନ୍ତରୁ । ସୈନ୍ୟବାହିନୀ ଭିତରେ ନବେ ପ୍ରତିଶତ ଲୋକେ ତାର କଳନା ଗାନ କରୁଛନ୍ତି — ସେମାନେ ଜନସାଧାରଣଙ୍କର ଆନ୍ଦୋଳନ ଉପରେ ସୈନ୍ୟବାହିନୀର ଆକ୍ରମଣର ବିରୋଧୀ । ତେଣୁ ଏକମୁହୂର୍ତ୍ତ ଆସନ୍ନ ।

ମାତ୍ର ଏସବୁ ସତ୍ତ୍ୱେ ପୁରୁଣା ତରିକାରେ ମାର୍କସ୍ବାଦର ପ୍ରୟୋଗ କରିବା ଭୁଲ ହେବ । ଅତୀତରେ ଭୁଲ, ତ୍ରୁଟି ବିସଙ୍ଗତିର ସବୁ କମ୍ୟୁନିଷ୍ଟଙ୍କୁ ଶିକ୍ଷା ଗ୍ରହଣ କରିବାକୁ ହେବ । ଗଡ଼ାଳିକା ପ୍ରକାର ଚାଳିତ ହୋଇ ତତ୍ତ୍ୱର ଯାନ୍ତ୍ରିକ ପ୍ରୟୋଗର ଦିନ ଚାଲିଯାଇଛି । ଲେନିନ୍ କହିଥିଲେ, "Theory is grey, but exprience of life is ever green." ତେଣୁ ତତ୍ତ୍ୱ ନାମରେ ଅନ୍ଧାନୁସରଣ, ତାତ୍ତ୍ୱିକ ମତାନ୍ଧତାକୁ ଛାଡ଼ି ପ୍ରତ୍ୟେକର ନିଜସ୍ୱ ପରିସ୍ଥିତିରେ ମାର୍କସ୍ବାଦର ସୃଜନଶୀଳ ପ୍ରୟୋଗ କରିବାକୁ ହେବ । ଜନଚେତନାର ସୃଷ୍ଟି, ସେଥିପାଇଁ ବିଭିନ୍ନ ଦେଶର ବୈପ୍ଳବିକ ଆନ୍ଦୋଳନରୁ ଶିକ୍ଷା, ଜନଜାଗୃତିର ସଂଘଠନ ଓ ମେହନତି ଲୋକଙ୍କର ସଂଗଠନକୁ ବ୍ୟାପକ କରିବା ଆଜି ଜରୁରୀ ହୋଇପଡ଼ିଛି । ଆଜିର ଅବସ୍ଥାରେ ଇଂରାଜୀ କବି ସେଲିଙ୍କୁ ଉଦ୍ଧାର କରୁଛି "It winter comes, can the spring for behind."—ଯଦି ଆଜି ଶୀତ ଆସେ, ବସନ୍ତ ରହେ ବହୁ ଦୂର !

# ଆମ ଶାସ୍ତ୍ର ଓ ସଂସ୍କୃତି ଏକ ତୀର୍ଯ୍ୟକ ଦୃଷ୍ଟିପାତ

ଅଧ୍ୟାପକ **ଡକ୍ଟର ଲକ୍ଷ୍ମୀନାରାୟଣ ରାୟସିଂହ**

ଆମ ଭାରତ ବର୍ଷରେ ବେଦ, ଉପନିଷଦ, ରାମାୟଣ, ମହାଭାରତ ପ୍ରଭୃତି ଗ୍ରନ୍ଥମାନଙ୍କର ପ୍ରଭାବ ଅପରିସୀମ । ପୁରାତନ ଏହି ଶାସ୍ତ୍ରମାନଙ୍କ ସମ୍ପର୍କରେ ବହୁ ରହସ୍ୟ ମିଶ୍ରିତ କାହାଣୀ ପ୍ରଚଳିତ । ସମ୍ପ୍ରତି ପ୍ରତ୍ୟେକ ଘଟଣାକୁ ବିଜ୍ଞାନ ଓ ଇତିହାସର ଉପାଦାନରେ ତାହାର ସମୟ ଓ ବିଷୟବସ୍ତୁର ମୂଲ୍ୟାୟନ କରାଯାଉଛି । ସେହି ମୂଲ୍ୟାୟନର ଭିତ୍ତିରେ ସ୍ଥିର କରାଯାଇଛି ଯେ ବୈଦିକ ଆର୍ଯ୍ୟମାନେ ଖ୍ରୀ : ପୂ ୨୦୦୦ ଅବ୍ଦର ପରବର୍ତ୍ତୀ କୌଣସି ସମୟରେ ମଧ୍ୟ ଏସିଆର କୌଣସି ସ୍ଥାନରୁ ଇରାନ ଓ ଭାରତକୁ ଆସି ବସତି ସ୍ଥାପନ କରିଥିଲେ । ସେମାନେ ଆସିବାବେଳେ ତାଙ୍କ ସହ ସେମାନଙ୍କର ସାଂସ୍କୃତିକ ସମ୍ପଦ, ସ୍ତୋତ୍ର ଓ ପୂଜା ପଦ୍ଧତି ବିଷୟକ ବିଧି ବିଧାନମାନ ନେଇ ଆସିଥିଲେ । ବସତି ସ୍ଥାପନ ପରେ ତାହା ସବୁ ସଙ୍କଳିତ ହେଲା । ଶୁଣି ଶୁଣି ମନେ ରଖି-ଥିବାରୁ ତାହାର ନାମ ଥିଲା 'ଶ୍ରୁତି' ସଙ୍କଳିତ ହେବା ପରେ 'ବେଦ' ଭାବେ ପ୍ରତିଷ୍ଠିତ ହେଲା । ସେହି 'ବେଦ' ଚାରି ଭାଗରେ ବିଭକ୍ତ ଋକ୍, ସାମ, ଯଜୁଃ, ଅର୍ଥବ । ଏଥି ମଧ୍ୟରୁ 'ଋକ୍‌ବେଦ' ସମସ୍ତଙ୍କ ମତରେ ପ୍ରାଚୀନତମ । ଏଥିରେ ଅନ୍ତ-ନିସର୍ଗ ଦେବତାଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗିତ ଅସଂଖ୍ୟ ସ୍ତୋତ୍ର । ସାମାବେଦରେ ଋକ୍‌ବେଦର ସ୍ତୋତ୍ରମାନଙ୍କର ଆବୃତ୍ତି ଓ ଗାନ-ବିଧି; ଯଜୁଃ ବେଦରେ ବିଭିନ୍ନ ଯାଗ-ଯଜ୍ଞ ଏବଂ ଲୌକିକ କ୍ରିୟା ବିଷୟକ ମନ୍ତ୍ର । ଏହା ଅନୁଶାସନ ବା ଆଚରଣ ବିଧି-ବିଧାନ ବିଷୟରେ ସମ୍ପୃକ୍ତ। 'ଅଥର୍ବ' ରେ ରହିଛି ମନ୍ତ୍ରତନ୍ତ୍ର ଓ ଅଭିଚାର ସମ୍ପର୍କରେ ଅନେକ ବିଷୟ । କେତେକ ଏହି କାରଣରୁ ଏହାକୁ କୁଳୀନ 'ବେଦ' ମଧ୍ୟରେ ଗଣନ୍ତି ନାହିଁ । ସେମାନଙ୍କ ମତରେ ବେଦ 'ତ୍ରୟୀ' ବୋଲି କୁହାଯାଏ ।

ଭାରତର ଆଦିବାସୀଙ୍କ ସହ ଆର୍ଯ୍ୟମାନଙ୍କ ସଂଘର୍ଷରୁ ପରାଜିତ ଆଦିବାସୀମାନେ ବଣ ଜଙ୍ଗଲରେ ନିବାସ ସ୍ଥାପନ କରିବା ପରେ, ସେମାନଙ୍କ ଧ୍ୟାନ ଧାରଣାକୁ ଆର୍ଯ୍ୟମାନେ ନିଜର ସାମାଜିକ କ୍ଷେତ୍ରରେ ମିଶାଇ ନେବାକୁ ଚେଷ୍ଟା କରି ସେମାନଙ୍କର ବନ୍ଦନା ଓ ପୂଜା ପଦ୍ଧତି ବିଷୟକୁ ନେଇ, ସେମାନଙ୍କ ମନ୍ତ୍ରତନ୍ତ୍ରକୁ ନେଇ ଏକ ସଂକଳନରେ ସ୍ଥାନ ଦେବା-ବେଳେ ଏହି ବେଦକୁ ଅପରିଶୁଦ୍ଧ ବୋଲି ତାହାର ନାମ କରଣ କରିଥିଲେ 'ଅଥର୍ବ' । ବେଦ ପରେ ପରେ ରଚିତ ହୋଇଛି ବିଭିନ୍ନ 'ଉପନିଷଦ' । ଏହି ଉପନିଷଦ ହେଉଛି— ବ୍ରହ୍ମ ବିଷୟକ ରଚନା ଏବଂ ତାହା ଜଗତ ଜୀବନ ଚିନ୍ତା ବିଷୟକ ଆଧ୍ୟାତ୍ମବାଦୀ ତତ୍ତ୍ୱ—ମାହାତ୍ମ୍ୟ । ଏହା ଭାବବାଦୀ ଦର୍ଶନର ଭିତ୍ତି ସ୍ୱରୂପ ।

ଭାରତୀୟ ଦର୍ଶନରେ ବୈଦିକ ଓ ଅବୈଦିକ ଦୁଇ ଭାଗରେ ବିଭକ୍ତ ଗ୍ରନ୍ଥମାନ ରହିଛି । ଅବୈଦିକ ଦର୍ଶନ ଗ୍ରନ୍ଥପ୍ରଣେତା ବେଦକୁ ପ୍ରାମାଣ୍ୟ ହିସାବରେ ଗ୍ରହଣ କରନ୍ତି ନାହିଁ । ଏମାନେ ହେଲେ, ବୌଦ୍ଧ ଜୈନ ଓ ଚାର୍ବାକ୍‌ମାନେ । ଯେଉଁ-ମାନେ ବେଦରେ ବିଶ୍ୱାସୀ ସେମାନଙ୍କ ଗ୍ରନ୍ଥାବଳୀକୁ ଛଅ ଭାଗରେ ବିଭକ୍ତ କରାଯାଇଛି । ଯଥା—ନ୍ୟାୟ, ବୈଶେଷିକ, ସାଂଖ୍ୟ,ଯୋଗ,ମୀମାଂସା, ଓ ବେଦାନ୍ତ । ଏଥି ମଧ୍ୟରୁ କେତେକ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର ନକଲେ ମଧ୍ୟ ବେଦର ପ୍ରାମାଣିକତା ଗ୍ରହଣ କରିଥିବାରୁ ତାହା ଏକ ଶ୍ରେଣୀ ଭୁକ୍ତ କରାଯାଇଥାଏ । ଏହା ବ୍ୟତୀତ ମାଧ୍ୱମତ ଦର୍ଶନ ବା ଶୈବ-ଶାକ୍ତ ଦର୍ଶନ, ଶଙ୍କରଙ୍କ ଅଦ୍ୱୈତ ତତ୍ତ୍ୱ, ରାମାନୁଜଙ୍କ, ବିଶିଷ୍ଟା ଦ୍ୱୈତ ତତ୍ତ୍ୱ ଅଥବା ଗୌଡ଼ୀୟ ଅଚିନ୍ତ୍ୟ ଭେଦା-ଭେଦ ତତ୍ତ୍ୱ, ଯେହେତୁ ଏହି ବୈଦିକ ଦର୍ଶନର କୌଣସି ନା କୌଣସି ଶାଖାର ପରିପୂରକ, ସେଥିପାଇଁ ସେ ଗୁଡ଼ିକୁ ସ୍ୱତନ୍ତ୍ର ବା ଷଡ଼ାଙ୍ଗ ଦର୍ଶନ ବୋଲି ଧରାଯାଏ ନାହିଁ । ସେ ସବୁ ଏହି ଦର୍ଶନ ଶାସ୍ତ୍ରର ଅନ୍ତର୍ଭୁକ୍ତ ।

ବୌଦ୍ଧ ଓ ଜୈନ ଦର୍ଶନ ସ୍ପଷ୍ଟ ଭାବରେ ଈଶ୍ୱରଙ୍କ ଅସ୍ତିତ୍ୱରେ ଅବିଶ୍ୱାସୀ । କିନ୍ତୁ ବୌଦ୍ଧମାନଙ୍କର 'ନିର୍ବାଣ ବାଦ' ଓ ଜୈନମାନଙ୍କର 'ଅନେକାନ୍ତ ବାଦ' ବା 'ନିର୍ବାଣ' ହିନ୍ଦୁ ଦର୍ଶନର ଭିତ୍ତି ରୂପେ ମୋକ୍ଷବାଦର ସମଧର୍ମୀ ଏବଂ ଦୁଇପକ୍ଷ କର୍ମଫଳ ଓ ଜନ୍ମାନ୍ତରରେ ପ୍ରତ୍ୟୟ ସମ୍ପନ୍ନ । ଆହାର ଆଚାର ଓ ଅର୍ଚ୍ଚନାରେ ଶୁଚିତାର ସମର୍ଥକ କାରଣରୁ ବର୍ଣ୍ଣାଶ୍ରମୀ ପଣ୍ଡିତମାନେ ସେମାନଙ୍କୁ ହିନ୍ଦୁଧର୍ମ ଠାରୁ ବଞ୍ଚିତ

ମର୍ଯ୍ୟାଦା ଦେଉନଥିଲେ ଓ ବୁଦ୍ଧଙ୍କୁ ଅବତାର ମଧ୍ୟରେ ନେଇଛନ୍ତି ।

ଭାରତ ବର୍ଷରେ ଏହି ଭାବବାଦ ଦର୍ଶନ ପାଖାପାଖି ବସ୍ତୁବାଦ ଦର୍ଶନର ଧାରା ମଧ୍ୟ ଅବ୍ୟାହତ ରହିଆସିଛି । ପ୍ରତିକୂଳ ପରିସ୍ଥିତି ଓ ଜନେ ଜନେ ଆତ୍ମପ୍ରକାଶରେ ସମର୍ଥ ହୋଇଛି । ମଖଲି ପୁତ୍ର ଗୋଶାଳ,କେଶକମ୍ବଳୀ ଓ ଚାର୍ବାକ— ସେହି ଲୋକାୟତିକ ବା ବସ୍ତୁବାଦୀ ଦର୍ଶନର ପ୍ରଧାନ ପ୍ରବକ୍ତା । 'ଚାର୍ବାକ' ନାମଧେୟ ଜଣକ ନାମ 'ମହାଭାରତ'ରେ ଦେଖିବାକୁ ମିଳେ । ଏମାନଙ୍କ ମତରେ ପ୍ରାଣ ଓ ଚେତନା ମଣିଷ ଦେହର ଅଂଶ ବିଶେଷ, ତେଣୁ ଆତ୍ମା ବୋଲି କିଛି ନାହିଁ । ମୃତ୍ୟୁ ସଙ୍ଗେ ସଙ୍ଗେ ସବୁର ଅବସାନ ଘଟେ । ପ୍ରାକ୍ତନ କର୍ମଫଳ ବୋଲି କିଛି ନାହିଁ । ତେଣୁ ପୂର୍ବ ଜନ୍ମର ଫଳ ଭୋଗ କରିବା ବା ଜନ୍ମାନ୍ତର ଲାଭ କରିବା ସମ୍ପୂର୍ଣ୍ଣ ଅବାନ୍ତର । ପ୍ରାଣମୟ ଏହି ଜଗତ ପଦାର୍ଥଟି କ୍ରମେ କ୍ରମେ ବସ୍ତୁ ପୁଞ୍ଜର ସ୍ୱୟଂକ୍ରିୟ ଶକ୍ତିରେ ଗଢି ଉଠିଛି । କୌଣସି ମିସ୍ତ୍ରି ବା କାରିଗର ହାତରୁ ଦିନେ ଏହାକୁ ଗଢିନାହିଁ । ତେଣୁ ଈଶ୍ୱର ସମ୍ବନ୍ଧୀୟ ଧାରଣା ସର୍ବୈବ ଭିତ୍ତିହୀନ । ଚାର୍ବାକ-ମାନେ ଆତ୍ମା ଓ ଆକାଶର ଅସ୍ତିତ୍ୱ ଅସ୍ୱୀକାର କରନ୍ତି । ତାହା ଅଦୃଶ୍ୟ ବୋଲି, ଭବିତବ୍ୟ, ଜନ୍ମାନ୍ତର ଓ ମୋକ୍ଷକୁ ଅସ୍ୱୀକାର କରନ୍ତି, କଳ୍ପିତ ବୋଲି । ଈଶ୍ୱରଙ୍କ ଅସ୍ୱୀକାର କରନ୍ତି ଅପ୍ରମାଣ୍ୟ ବୋଲି । ପୂଜା-ଉପାସନା, ବ୍ରତ, ଉପବାସ ଓ ଶ୍ରାଦ୍ଧ, ତର୍ପଣ ବର୍ଜନୀୟ ଓ ଅନାବଶ୍ୟକ— ତେଣୁ ତେଜ୍ୟ ବୋଲି କହନ୍ତି ।

ବେଦର କେଉଁ ଶାଖା ମଧ୍ୟରୁ କପିଳଙ୍କ ସାଂଖ୍ୟ ଦର୍ଶନ ଓ କଣାଦଙ୍କ ବୈଶେଷିକ ଦର୍ଶନ—ପୂର୍ବପୁରୁ ଈଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସୀ ନୁହେଁ । ତଥାପି ଏହା ହିନ୍ଦୁ ଶାସ୍ତ୍ରରେ ଗଣ୍ୟ କରାଯାଏ । କାରଣ ଏମାନଙ୍କୁ ତତ୍କାଳରେ ନିଜର କରିନେବା ଆବଶ୍ୟକ ଥିଲା ।

## ରାମାୟଣ, ମହାଭାରତ ଓ ପୁରାଣ

ଧର୍ମ, ସଂସ୍କୃତି ଓ ଜ୍ଞାନ ଦ୍ୟୋତକ ଗ୍ରନ୍ଥ ଭାବରେ ଭାରତ ବର୍ଷରେ ସାମାଜିକ ନୈତିକ ଓ ଆଧ୍ୟାତ୍ମିକ ଜୀବନରେ ଯାହାର ପ୍ରଭାବ ସର୍ବାଧିକ ସେହି ରାମାୟଣ, ମହାଭାରତ ଓ ଭାଗବତର ସମ୍ୟକ ଆଲୋଚନା ଆମକୁ ଭାରତରେ ଆର୍ଯ୍ୟ ଅନାର୍ଯ୍ୟ ଜାତିମାନଙ୍କ ମିଶ୍ରଣ ସମ୍ପର୍କରେ ଆଲୋକ ପ୍ରଦାନ କରିଥାଏ । ଏହି ତିନୋଟି ଗ୍ରନ୍ଥକୁ ସାଧାରଣତଃ ସାହିତ୍ୟ ପର୍ଯ୍ୟାୟଭୁକ୍ତ କରାନଯାଇ ଧର୍ମ ଗ୍ରନ୍ଥ ଭାବେ ଗ୍ରହଣ କରା-ଯାଇଥାଏ । ଉତ୍ତର ଭାରତରେ ସର୍ବତ୍ର ସୀତାରାମ, ଦକ୍ଷିଣ ଓ ପୂର୍ବ ଭାରତରେ ବିଶେଷତଃ ପୂର୍ବ ଭାରତରେ ରାଧାକୃଷ୍ଣ ତଥା କ୍ରମେ ଲକ୍ଷ୍ମୀନାରାୟଣ ଯୁଗଳ-ବିଗ୍ରହ ରୂପରେ ପୂଜିତ ହୁଅନ୍ତି । ଏହି କାରଣରୁ ରାମଚରିତ ରୂପେ ରାମାୟଣ ଓ କୃଷ୍ଣ ଚରିତ ରୂପେ ମହାଭାରତ ଓ ଭାଗବତ ସଗୌରବରେ ହିନ୍ଦୁର ପୂଜାସ୍ଥଳରେ ସ୍ଥାନ ପାଇଥାଏ । କିନ୍ତୁ ଏହାର ବିବରଣୀରୁ ଯେଉଁ ଐତିହାସିକ ଓ ଭୌଗୋଳିକ ତଥ୍ୟ ମିଳି-ଥାଏ ତାହା ଭାରତର ଦକ୍ଷିଣାଞ୍ଚଳର ପ୍ରାଗାର୍ଯ୍ୟ ଅଧିବାସୀଙ୍କ ସହ ଆର୍ଯ୍ୟମାନଙ୍କର ଅଭିଯାନର କାହାଣୀ । ଜାତିମାନଙ୍କ ସଭ୍ୟତାର ମିଶ୍ରଣରେ ଏକ ନୂତନ ସଭ୍ୟତାର ଜନ୍ମ ହୋଇଥିଲା । ଏହା ଐତିହାସିକ ସତ୍ୟ । ମହାଭାରତର ଐତିହାସିକତା ମଧ୍ୟ ପ୍ରାମାଣ୍ୟ । କାରଣ ଏହାର କେନ୍ଦ୍ର ଚରିତ୍ର କୃଷ୍ଣ ହେଉଛନ୍ତି ଇତିହାସ-ପୁରୁଷ । ଛାନ୍ଦୋଗ୍ୟ ଉପନିଷଦ ଖ୍ରୀ : ପୂ ୧୨୦୦ ଅବ୍ଦ ପାଖାପାଖି ସମୟରେ ରଚିତ । ସେଠାରୁ ମହାଭାରତ, ଭାଗବତ, ହରିବଂଶ ଓ ବିଷ୍ଣୁ ପୁରାଣ ପର୍ଯ୍ୟନ୍ତ କୃଷ୍ଣ କଥାର ଉଲ୍ଲେଖ ରହିଛି । ମହା-ଭାରତରେ କୃଷ୍ଣଙ୍କ ଜୀବନର ମଧ୍ୟବର୍ତ୍ତୀ ସମୟର କଥା ବର୍ଣ୍ଣିତ । ଆଦି ଓ ଅନ୍ତ୍ୟ ସମୟ ବର୍ଣ୍ଣିତ ହୋଇଛି— ଭାଗବତ ଓ ହରିବଂଶରେ । ଭାଗବତ ରଚିତ ହୋଇଛି ଖ୍ରୀଷ୍ଟୀୟ ୮ମ ଓ ୯ମ ଶତକ ସମୟ କାଳରେ 'ମହାଭାରତ' ଭାରତୀୟ ସଂସ୍କୃତିର କୋଷଗ୍ରନ୍ଥ ସ୍ୱରୂପ । ବୈଦିକ ଭାରତ, ପୌରାଣିକ ଭାରତ, ବୌଦ୍ଧ ଭାରତ—ଏକ ସାଙ୍ଗରେ ପ୍ରତି-ଫଳିତ ହୋଇଛି ମହାଭାରତରେ । ଏଥିରେ ପ୍ରେମ, ପ୍ରଜ୍ଞା ଓ ପୌରୁଷର ଯେପରି ସମାହାର ଦେଖାଯାଏ, ସେହିପରି ଭୋଗ, ଯୋଗ ଓ ସନ୍ନ୍ୟାସର କଥା ମଧ୍ୟ ଦେଖାଯାଏ ।

ମହାଭାରତ ଯେଉଁ ସମୟରେ ସଂକଳିତ ହୋଇଥିଲା, ସେ ସମୟରେ ଶ୍ଳୋକ ସଂଖ୍ୟା ଥିଲା ୧୦ ହଜାର । ତାହା ପରବର୍ତ୍ତୀ ସମୟରେ ବଢି ବଢି ୧ ଲକ୍ଷରେ ପରିଣତ ହୋଇଛି । ତେଣୁ ବିଭିନ୍ନ ସମୟରେ ପ୍ରଚଳିତ କଥା ଓ ବିଭିନ୍ନ ହାତର ରଚନାରେ ତାହା ସମୃଦ୍ଧ । ସେଥିରେ ସଂଯୋଜିତ ହୋଇଛି "ଭଗବତ୍ ଗୀତା" । ଏଥିରେ ଜ୍ଞାନ, କର୍ମ ଓ ଭକ୍ତି ସମନ୍ୱିତ ଆଦର୍ଶ ପ୍ରଚାର କରାଯାଇଛି । ହିନ୍ଦୁ

ପୁନରୁତ୍ଥାନ ସମୟରେ ହିଁ ତାହା ସମ୍ଭବ । ଭାଗବତ ଅନ୍ୱର ପରବର୍ତ୍ତୀ ରଚନା । ସେତେବେଳେ କୃଷ୍ଣଙ୍କୁ ଅବତାରତ୍ୱରେ ପ୍ରତିଷ୍ଠିତ କରାଯାଇଛି ଓ ହିନ୍ଦୁ ଜୀବନଚର୍ଯ୍ୟାରେ ଭକ୍ତିଧର୍ମ ମହିମାନ୍ୱିତ ହୋଇଉଠିଛି । ପୁରାଣମାନଙ୍କର ରଚନାକାଳର ପ୍ରାରମ୍ଭ ଏହି ସମୟ ବୋଲି ଧରାଯାଇଥାଏ ।

ମହେଞ୍ଜୋଦାରୋ ଯୁଗରୁ ଭାରତରେ ପ୍ରାଚୀନତମ ଦେବତା ରୂପେ ଶିବ ଓ ଶକ୍ତି ପୂଜାୟତନରେ ଥିଲେ । 'ବେଦ'ର ରୁଦ୍ରଙ୍କୁ ତାଙ୍କ ସହ ଅଭିନ୍ନ ବୋଲି ଦେଖାଯାଇଛି । ବୈଦିକ ଦେବତା 'ବିଷ୍ଣୁ' ହିଁ ବାସୁଦେବ କୃଷ୍ଣରେ ରୂପାନ୍ତରିତ ହୋଇ ଭକ୍ତି ଧର୍ମର କେନ୍ଦ୍ରୀୟ ପୁରୁଷ ହୋଇଛନ୍ତି । ଏହି ଶିବଶକ୍ତି ଓ ବିଷ୍ଣୁଙ୍କ ମହିମା ପ୍ରଚାର ପାଇଁ ମୁଖ୍ୟତଃ ପୁରାଣ-ମାନଙ୍କର ଅନ୍ୟାନ୍ୟ ଗୌଣ ଦେବତାଙ୍କର ମାହାତ୍ମ୍ୟ, ତୀର୍ଥ ମାହାତ୍ମ୍ୟ, ବଂଶାବଳୀ, ଧର୍ମଶାସ୍ତ୍ର, ନୀତିଶାସ୍ତ୍ର, କାମଶାସ୍ତ୍ର, ଇତିହାସ, ଜ୍ୟୋତିର୍ବିଦ୍ୟା ପ୍ରଭୃତିର ସାର ସଂଗ୍ରହ ରୂପେ ମଧ୍ୟ ଏ ସବୁ ହିନ୍ଦୁ ସମାଜରେ ପ୍ରତିଷ୍ଠିତ । ଏସବୁ ଗୋଟିଏ ସମୟର ରଚନା ନୁହେଁ । ଅଷ୍ଟମ-ନବମରୁ ତେରଶ— ଚଉଦଶହ ଶତାବ୍ଦୀ ମଧ୍ୟରେ ଏମାନଙ୍କର ସୃଷ୍ଟି ।

ପ୍ରଚଳିତ ପୁରାଣମାନଙ୍କ ମଧ୍ୟରେ ବାୟୁ, ସ୍କନ୍ଦ, ବିଷ୍ଣୁ, ଭାଗବତ, ମାର୍କଣ୍ଡେୟ ଓ କାଳିକା ପୁରାଣର ନାମ ମୁଖ୍ୟ । ବିଷ୍ଣୁ ପୁରାଣ ଓ ଭାଗବତରେ କୃଷ୍ଣ କଥା ଥିଲେ ମଧ୍ୟ ସେଥିରେ "ରାଧା" ନାହାନ୍ତି । ମହାଭାରତରେ କୃଷ୍ଣକଥା ଥିଲେ ମଧ୍ୟ ସେଥିରେ "ରାଧା" ନାହାନ୍ତି । ମହାଭାରତର ପରିଶିଷ୍ଟ ରୂପେ ବିଖ୍ୟାତ "ଖିଲ ହରିବଂଶ" ରେ ମଧ୍ୟ 'ରାଧା' ଅନୁପସ୍ଥିତ । ସେ ପ୍ରଥମେ ଆବିର୍ଭୂତ ହୋଇଛନ୍ତି ୧୦ମ ଓ ୧୧ଶ ଶତକରେ ରଚିତ "ବ୍ରହ୍ମବୈବର୍ତ୍ତ ପୁରାଣ" ରେ । ଏହାପରେ ଜୟଦେବ କୃତ "ଗୀତ ଗୋବିନ୍ଦ"ରେ ତାଙ୍କର ଅନୁପ୍ରବେଶ । ମାର୍କଣ୍ଡେୟ ପୁରାଣର ଅଂଶରୂପେ ଚଣ୍ଡୀପୁରାଣ ଓ ମହାଭାରତର ଅଂଶ ରୂପେ 'ଭଗବତ ଗୀତା'ର ପ୍ରସାର । ଲୋକଶିକ୍ଷା ଓ ହିନ୍ଦୁ ଆଚାରର ବିସ୍ତାର ଓ ସଂସ୍କାର ପ୍ରତିଷ୍ଠା ପାଇଁ ଏ ସବୁର ରଚନା ହୋଇଥିବାରୁ ଭଲ ମନ୍ଦ ନିର୍ବିଶେଷରେ ସବୁକଥା ଏସବୁଥିରେ ସନ୍ନିବେଶିତ ହୋଇଛି ।

## ହିନ୍ଦୁ ଓ ହିନ୍ଦୁତ୍ୱ—

ପ୍ରାକ୍‌ବୈଦିକ ମହେଞ୍ଜୋଦାରୋର ପ୍ରଧାନ ଏକ କେନ୍ଦ୍ର ଥିଲା ସିନ୍ଧୁ ଉପତ୍ୟକା । ବୈଦିକ ଆର୍ଯ୍ୟମାନେ ପ୍ରଥମେ ଉପନିବେଶ ସ୍ଥାପନକଲେ ସିନ୍ଧୁ ତୀରରେ । ଏହି ସିନ୍ଧୁକୁ ଗ୍ରୀକ୍‌ମାନେ କହିଲେ 'ଇଣ୍ଡାସ' । ନଦୀ, ଦେଶ ଓ ମଣିଷ ପାଇଁ ତାହାହିଁ ବ୍ୟବହୃତ ହେଲା । ଏହି 'ଇଣ୍ଡାସ' ଆରବମାନଙ୍କ ଦ୍ୱାରା ପରିଣତ ହେଲା 'ହିନ୍ଦୁ'ରେ । ଇଉରୋପୀୟମାନେ କଲେ 'ଇଣ୍ଡିଆ' । ଏହି ଇଣ୍ଡିଆ ବା ହିନ୍ଦୁସ୍ଥାନରେ ବାସ କରୁଥିବା ଲୋକମାନଙ୍କ ଧର୍ମକୁ ପରବର୍ତ୍ତୀ କାଳରେ ହିନ୍ଦୁଧର୍ମ ରୂପେ ଚିହ୍ନିତ କରାଗଲା । ଅନ୍ୟାନ୍ୟ ଧର୍ମଠାରୁ ହିନ୍ଦୁ ଧର୍ମର ସାଧାରଣତଃ କେତେକ ମୌଳିକ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ଜରଥୁଷ୍ଟ୍ରୀୟ ବା ଜେନ୍ଦ, ଇହୁଦୀ, ବୌଦ୍ଧ, ଖ୍ରୀଷ୍ଟାନ, ଇସଲାମ ପ୍ରଭୃତି ଧର୍ମମାନ କୌଣସି ଆଚାର୍ଯ୍ୟ ବା ପ୍ରଚାରକ—ଙ୍କ ଦ୍ୱାରା ଇତିହାସରେ ସ୍ଥାନ ପାଇଛି । ସେମାନଙ୍କର ପ୍ରଚାରିତ ତତ୍ତ୍ୱ ଓ ଆଚାର ଆଚରଣ ବିଧି ପ୍ରଭୃତି ନିର୍ଦ୍ଦିଷ୍ଟ କେତେକ ପୁସ୍ତକରେ ଲିପିବଦ୍ଧ ହୋଇଛି । କିନ୍ତୁ ହିନ୍ଦୁ ଧର୍ମ ସେପରି ଏକାତ୍ମିକ ପ୍ରକୃତିର ନୁହେ । ସୁଦୀର୍ଘ କାଳ ବ୍ୟାପୀ ନାନା ମତ, ନାନା ପଥ, ଆଦର୍ଶ ଓ ପୂଜା ପଦ୍ଧତିର ଅନୁଗାମୀ ମଣିଷମାନେ କ୍ରମେ ଏକ 'ହିନ୍ଦୁ' ଅଭିଧାର ଆଶ୍ରୟ ନେଇଛନ୍ତି । ତେଣୁ ସେମାନଙ୍କ ମଧ୍ୟରେ ଅଛନ୍ତି ନିରାକାର ଏକେଶ୍ୱର ବାଦୀ, ସାକାର ଉପାସକ, ବହୁଦେବ ବାଦୀ । ଏହି ଦୁଇଟି ବିଭାଗରେ ପୁଣି କେହି ମାତୃ-ଉପାସକ, କେହି ପିତୃ-ଉପାସକ । କେହି ନିରାମିଷାଶୀ, କେହି ମତ୍ସ୍ୟ ମାଂସ ଭୋଜୀ, କେହି ମୋକ୍ଷ ପ୍ରେମୀ, କେହି ପାରମାର୍ଥିକ ଲୀଳା ନନ୍ଦ ବାଞ୍ଛା । କେହି ସନ୍ନ୍ୟାସ, ବୈରାଗ୍ୟ ଓ ଯୌନ ସଂହାରର ସମର୍ଥକ, କେହି ପାନ ଭୋଜନ ଓ ଇନ୍ଦ୍ରିୟ ସେବାରେ ମୁକ୍ତିକାମୀ । ଏସବୁ ଧର୍ମୀୟ ଆଚାର ଅନୁଷ୍ଠାନ ଓ ଉପାସନାର ପ୍ରକାର ଦେଖି ଆଶ୍ଚର୍ଯ୍ୟ ଲାଗେ । କେବଳ ସେତିକି ନୁହେଁ ଖାଦ୍ୟପେୟ, ଜାତକର୍ମ, ବିବାହ, ଅନ୍ତ୍ୟେଷ୍ଟି କ୍ରିୟା ପ୍ରଭୃତି ସାମାଜିକ କୃତ୍ୟାକୃତ୍ୟରେ ଅଜସ୍ର ଅମେଳ, ଦେଖିବାକୁ ମିଳେ । ଅମେଳ ମଧ୍ୟ ପ୍ରତ୍ୟୟ ଓ ଜୀବନ ଚର୍ଯ୍ୟାରେ । ତେଣୁ ଏହାକୁ କୁହାଯାଇ ପାରେ ହିନ୍ଦୁଧର୍ମ ଏକ ଧର୍ମ ନୁହେଁ, ତାହା ଏକ ଧର୍ମ-ସମବାୟପରି ଏବଂ ବହୁଦିନ ବ୍ୟାପୀ ତାହା ସଂଗଠିତ ହୋଇଛି ବୋଲି ଏହା ମଧ୍ୟରେ ଏତେ ପ୍ରକାର ପରସ୍ପର ବିରୋଧିତା ।

ଧର୍ମରେ କୁହାଯାଇଛି ଜୀବ ମାତ୍ରେ ଶିବ, ପରମେଶ୍ୱରଙ୍କ ସନ୍ତାନ କିନ୍ତୁ ସମାଜରେ ଚତୁର୍ବର୍ଣ୍ଣକୁ ଏପରି କୌଶଳପୂର୍ଣ୍ଣ ଭାବରେ ରଖାଯାଇଛି—ଯାହା ଫଳରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଅର୍ଥାତ ପୁରୋହିତ, ଶାସକ ଓ ବଣିକମାନେ ସମସ୍ତ କ୍ଷମତା ଐଶ୍ୱର୍ଯ୍ୟର ଅଧିକାରୀ ହୋଇ ବସିଛନ୍ତି ଏବଂ ଶୂଦ୍ରମାନେ ହୋଇଛନ୍ତି ସବୁ ଅଧିକାରରୁ ବଞ୍ଚିତ । ସେମାନେ ହୋଇଛନ୍ତି ଶିକ୍ଷା ଲାଭରୁ ବଞ୍ଚିତ। କାନରେ ବେଦ, ମନ୍ତ୍ର ଶୁଣିଲେ ତାଙ୍କ କାନରେ ଗରମ ସୀସା ଢାଳି ଦେବାର ଆଦେଶ ଦିଆଯାଇଛି । ବେଦ ତପସ୍ୟା କଲେ ଶିରଚ୍ଛେଦ ହେବ, ଯେପରି ହୋଇଛି ରାମଙ୍କ ହାତରେ ଶମ୍ବୁକର । ଅସ୍ତ୍ର ବିଦ୍ୟା ଶିଖିଲେ ହାତ ଆଙ୍ଗୁଠି କଟାଯିବ—ଯେପରି ଏକଲବ୍ୟର ଦ୍ରୋଣାଚାର୍ଯ୍ୟଙ୍କ ଦ୍ୱାରା ହୋଇଛି । ଅଥଚ ଗୁହକ ଚଣ୍ଡାଳର ଭେଳାରେ ରାମଚନ୍ଦ୍ର ନଦୀ ପାରି ହେଲେ ସେଥିରେ ଦୋଷ ଧରାଯିବ ନାହିଁ । ତରୁଣୀ ଧୀବର କନ୍ୟା ମତ୍ସ୍ୟଗନ୍ଧାକୁ ନେଇ ବଳାତ୍କାର କରିବେ ବେଦବ୍ୟାସଙ୍କ ପିତା—ପରାଶର । ଏହି ପରି ବର୍ଣ୍ଣାଶ୍ରମ ଭେଦବୁଦ୍ଧି ହିଁ ଭାରତ ଇତିହାସ ଓ ସମାଜର ପ୍ରଧାନ କଳଙ୍କ ହୋଇ ରହି ଆସିଛି । ଏ କଳଙ୍କ ଆଜି ମଧ୍ୟ ଜାଗ୍ରତ । ଯେଉଁ ଆଦିବାସୀମାନେ ରହିଲେ ଆର୍ଯ୍ୟମାନଙ୍କର ପ୍ରାଦୁର୍ଭାବ ମଧ୍ୟ ନମାନି, ଯେଉଁ ଯେଉଁମାନେ ବଶ୍ୟତା ସ୍ୱୀକାର କଲେ—ହେଲେ ଦାସ—ଶୂଦ୍ର । ଏହି ଶୂଦ୍ରମାନଙ୍କର ବେଦ, ବ୍ରାହ୍ମଣ ଓ ଯାଗଯଜ୍ଞ ବିରୋଧୀ ଆନ୍ଦୋଳନ ପ୍ରକାଶିତ ହେଲା ବୌଦ୍ଧ ଓ ଜୈନ ଧର୍ମର ଉତ୍ଥାନରେ । ବୌଦ୍ଧ ଆନ୍ଦୋଳନର ଅବକ୍ଷୟ ପରେ ପୁଣି ଅନ୍ତ୍ୟଜରେ ପରିଣତ ହୋଇଥିବା ଶୂଦ୍ରମାନେ ୧୨ଶ ଶତାବ୍ଦୀରେ ଆଗତ ଇସଲାମକୁ ସ୍ୱାଗତ କଲେ । ଊନବିଂଶ ଶତକରେ ସେହି ନିଷ୍ପେଷିତମାନେ ପୁଣି ଖ୍ରୀଷ୍ଟାନ ଧର୍ମକୁ ଗ୍ରହଣ କଲେ । ପରିଶେଷରେ ବିଂଶ ଶତକରେ ଭାରତ ବିଭାଗ ଏହି ହିନ୍ଦୁ ସାମାଜିକ ଓ ସାମ୍ପ୍ରଦାୟିକ ସଙ୍କଟରୁ ସୃଷ୍ଟି ହେଲା ।

## ଭାରତର ବୌଦ୍ଧ ବିପ୍ଳବ—

ଭାରତରେ ଆର୍ଯ୍ୟ ପ୍ରଭୁତ୍ୱ ବିରୁଦ୍ଧରେ ଥରକୁ ଥର ବିଦ୍ରୋହ ଦେଖା ଦେଇଛି । ଏହି ବିଦ୍ରୋହ ନିଗୃହୀତ ଓ ଅସମ୍ମାନିତ ତଥାକଥିତ ନୀଚ ଶ୍ରେଣୀ ଲୋକମାନଙ୍କ ଦ୍ୱାରା ହିଁ ସୃଷ୍ଟି ହୋଇଛି । ଦର୍ଶନରେ ପ୍ରତିଫଳିତ ହୋଇଛି—ମଘୋଲି ପୁତ୍ର ଗୋସାଲ, କେଶକମ୍ବଳୀ ଓ ଚାର୍ବାକମାନଙ୍କ ରଚନାରେ । ଧର୍ମ ଓ ସମାଜରେ ବେଦ, ବ୍ରାହ୍ମଣ ଓ ଯାଗଯଜ୍ଞ ବିରୋଧୀ ବୌଦ୍ଧ ଏବଂ ଜୈନ ଧର୍ମରେ ଏହି ବିଦ୍ରୋହର ବାସ୍ତବ ରୂପ ପ୍ରକଟିତ ହୋଇଅଛି । ବୁଦ୍ଧଦେବ ଯେଉଁ ସାମ୍ୟ ଧର୍ମ ପ୍ରଚାର କଲେ ତାହା ତାଙ୍କର ହିନ୍ଦୁ ବର୍ଣ୍ଣାଶ୍ରମିକ ଆଭିଜାତ୍ୟ ଧ୍ୱଂସ କରି ସର୍ବମାନବିକ ଐକ୍ୟ ସ୍ଥାପନ କରିବା ଥିଲା ପ୍ରଧାନ ଲକ୍ଷ୍ୟ । ଚତୁର୍ବର୍ଣ୍ଣ ସୃଷ୍ଟି ବିରୁଦ୍ଧରେ ଏହା ବୈପ୍ଳବିକ ଆନ୍ଦୋଳନ ହିଁ ଥିଲା । ଏହି ଆନ୍ଦୋଳନ ବୁଦ୍ଧଦେବ ହଠାତ୍ ସୃଷ୍ଟି କରିନଥିଲେ । ତାଙ୍କ ପୂର୍ବରୁ କ୍ଷେତ୍ର ପ୍ରସ୍ତୁତ କରିଥିଲେ ବିଶ୍ୱାମିତ୍ର ଓ ଚାର୍ବାକ୍‌ଗଣ । ବିଶ୍ୱାମିତ୍ର ଆର୍ଯ୍ୟମାନଙ୍କ ଆଚାର ଆଚରଣରେ ଆମୂଳ ହିଁ ବାଗ ପ୍ରତି ବିଦ୍ରୋହ ଭାବ ସୃଷ୍ଟି କରିଥିଲେ । ବସ୍ତୁବାଦୀ ଚାର୍ବାକ୍ ଦର୍ଶନ ବେଦ ଉପନିଷଦ ପ୍ରଭାବିତ ଧର୍ମ ପ୍ରତ୍ୟୟ ଉପରେ ପ୍ରଚଣ୍ଡ ଆଘାତ ଦେଇଥିଲା । ବୁଦ୍ଧଦେବ ତାଙ୍କ ସମୟର ତଳିଆ ଶ୍ରେଣୀର ଅସନ୍ତୋଷ ଓ ବିକ୍ଷୁବ୍ଧତାକୁ ତାଙ୍କ ଆନ୍ଦୋଳନରେ ସଂହତ ରୂପ ପ୍ରଦାନ କରିଥିଲେ । ତେଣୁ ବୁଦ୍ଧଦେବ ହେଉଛନ୍ତି—ଭାରତ ଇତିହାସରେ ମଣିଷର ପ୍ରଥମ ମୁକ୍ତିଦାତା, ବିପ୍ଳବୀ ଓ ଜନଗଣ ମନର ପ୍ରଥମ ଅଧିନାୟକ ।

ବୁଦ୍ଧଦେବ ଯେତେବେଳେ ଯାହା କହିଥିଲେ, ସେ ସବୁ ତାଙ୍କର ଅନୁଗାମୀମାନେ ଲିପିବଦ୍ଧ କରିଛନ୍ତି । ବହୁ ଗ୍ରନ୍ଥ ମଧ୍ୟରେ 'ବିନୟ ପିଟକ' 'ସୂତ୍ର ପିଟକ' ଓ 'ଅଭିଧମ୍ମ ପିଟକ' ଏହି ତିନୋଟି ଭାଗରେ ଓ 'ଧମ୍ମପଦ'ରେ ସଙ୍କଳିତ ହୋଇଛି । ଏହି ଗ୍ରନ୍ଥମାନଙ୍କର ଅଭ୍ୟାସରୁ ଜଣାଯାଏ ଯେ, ବୁଦ୍ଧଦେବ ଏପରି ଏକ ପରିଶୁଦ୍ଧ ସାମ୍ୟ ଓ ସମାନାଧିକାର ଭିତ୍ତିକ ଧର୍ମ ପ୍ରଚାର କରିଥିଲେ, ଯେଉଁଥିରେ ଈଶ୍ୱର ନଥିଲେ, ଉପାସନା ନଥିଲା, ମୋକ୍ଷ ନଥିଲା—ଥିଲା ସେବା, ସଦାଚାର, ସର୍ବମାନବିକ ଐକ୍ୟ । ଶ୍ରେଣୀ-ସ୍ୱାର୍ଥ କଳୁଷିତ ଓ ମୋକ୍ଷବାଦ କବଳିତ ଓ ବ୍ରାହ୍ମଣ୍ୟ ଧର୍ମର ନାଗପାଶରୁ ମୁକ୍ତିର ବାଟ ଦେଖିଥିଲେ । ନିଷ୍ପେଷିତ ଅବହେଳିତ ଲୋକମାନେ ।

ବୌଦ୍ଧମାନେ ପ୍ରଥମେ ହିଁ ଗଣତାନ୍ତ୍ରିକ ସମାଜ ଚେତନା ଓ ରାଷ୍ଟ୍ରବୋଧର ସୃଷ୍ଟିକର୍ତ୍ତା । ବ୍ରହ୍ମ-ଅନୁସନ୍ଧାନ, ଆତ୍ମା-ପରମାତ୍ମାତତ୍ତ୍ୱ ବିଷୟକ ସୂତ୍ରଗ୍ରନ୍ଥ ଓ ସଂହିତା ପ୍ରଭୃତି ପରିବର୍ତ୍ତେ ଏହି ବୌଦ୍ଧମାନେ ହିଁ ଜ୍ଞାନ-ବିଜ୍ଞାନର ବିଭିନ୍ନ ଶାଖାରେ ବାସ୍ତବ ଗବେଷଣା କରି ପୁଷ୍ଟ କରିଛନ୍ତି । ଚରକ, ସୁଶ୍ରୁତ, ନାଗାର୍ଜ୍ଜୁନ, ଭାସ୍କରାଚାର୍ଯ୍ୟ, ବାତ୍ସାୟନ, କୌଟିଲ୍ୟ

ପାଣିନି, ପ୍ରମୁଖ ବୌଦ୍ଧ କମ୍ବା ବୌଦ୍ଧଭାବାପନ୍ନ ଥିଲେ । ବ୍ରାହ୍ମଣ ଏକାଧିପତ୍ୟରୁ ଶିକ୍ଷାକୁ ମୁକ୍ତ କରି ବୌଦ୍ଧମାନେ ସର୍ବଜନ-ମୁଖୀ କରିବା ପାଇଁ ନାଳନ୍ଦା, ତକ୍ଷଶୀଳା, ଉଦନ୍ତପୁରୀ ବିଶ୍ୱ-ବିଦ୍ୟାଳୟ ସମୂହଙ୍କ ମାଳିଁ ଉନ୍ମୁକ୍ତ କରିଦେଇ ଥିଲେ । ଜନସାଧାରଣଙ୍କର କଥ୍ୟାଭାଷାକୁ ଜ୍ଞାନ ବିଜ୍ଞାନର ପ୍ରସାର ମଧ୍ୟ ଧର୍ମ ପ୍ରଚାରର ମାଧ୍ୟମ କରିଥିଲେ ।

କିନ୍ତୁ ଏସମସ୍ତ ବିଧାନ ମାନ ଭାରତରେ ଦୀର୍ଘ ସ୍ଥାୟୀ ହୋଇ ପାରିଲା ନାହିଁ । ରାଜକୀୟ ପୃଷ୍ଠ ପୋଷକତାର ଅଭାବ ଓ ବ୍ରାହ୍ମଣ୍ୟ ଧର୍ମର ଅଭ୍ୟୁଦୟ ୧୦ମ ଶତାବ୍ଦୀ ମଧ୍ୟରେ ହିଁ ବୌଦ୍ଧଧର୍ମକୁ ଭାରତରୁ ଉତ୍ଖାତ କରିଦେଲା । ତାହା ଏଠାରୁ ଯାଇ ପୂର୍ବ ଏସିଆରେ ପ୍ରତିଷ୍ଠିତ ହେଲା । ଏବେ ମଧ୍ୟ ବର୍ମା, ଶ୍ରୀଲଙ୍କା, ଶ୍ୟାମ, ଚୀନ, କୋରିଆ, ଜାପାନ, ମଙ୍ଗୋ-ଲିଆ, ମାଞ୍ଚୁରିଆ ପ୍ରଭୃତିରେ ଜୀବନ୍ତ ରହିଛି । କିନ୍ତୁ ନିଜର ଉଦ୍ଭବ ଭୂମିରେ ବୁଦ୍ଧ ବଂଚିଛନ୍ତି କେବଳ ହିନ୍ଦୁ ଦଶା-ବତାରର ଅନ୍ୟତମ ଅବତାର ରୂପେ । ଓ ଆଉ କେତେକ ବୌଦ୍ଧଧର୍ମୀଙ୍କ ମତରେ । ତାଙ୍କର ସ୍ମୃତି ରୂପେ ରହିଛି— ଅଷ୍ଟାଙ୍ଗିକ ମାର୍ଗ ଓ ପଞ୍ଚଶୀଳ ଏବଂ ବିପୁଳ ପରିମାଣରେ ପାଲି ଓ ସଂସ୍କୃତ ବୌଦ୍ଧ-ସାହିତ୍ୟ ।

ବୌଦ୍ଧବାଦର ଅବକ୍ଷୟ କାଳରେ ଦେବବାଦ, ଅବତାର ବାଦ, ଜନ୍ମାନ୍ତର ବାଦ, ପ୍ରଭୃତି ବୌଦ୍ଧଧର୍ମରେ ପ୍ରବେଶ କରିଗଲା । ତାପରେ ଆସିଗଲା ଶ୍ରେଣୀଭେଦ, ସଂଘ ଓ ସଂଗଠନରେ ନାନା ପ୍ରକାର ଅନାଚାର, ଦୁର୍ନୀତି ଓ ଅଶୁଚିତା । ଏହି ପ୍ରକାର ବୌଦ୍ଧ ସଂଗଠନକୁ ଧ୍ୱଂସ କରି ଦେବା ଲାଗି କୁମାରିଲ ଭଟ୍ଟ ଓ ଶଙ୍କରଙ୍କ ପକ୍ଷରେ ସହଜ ହୋଇଥିଲା ।

## ଜୈନଧର୍ମ—

ଯେଉଁ ସାମାଜିକ ଆବଶ୍ୟକତା ଓ କାରଣରୁ ଭାରତରେ ବୌଦ୍ଧଧର୍ମର ଉଦ୍ଭବ ହୋଇଥିଲା, ସେହି ସାମା-ଜିକ କାରଣରୁ ହିଁ ଭାରତରେ ଜୈନ ଧର୍ମର ସୃଷ୍ଟି । ଏହି ଧର୍ମ ବୁଦ୍ଧ ଧର୍ମ ପରି ଈଶ୍ୱର ଓ ପୂଜାର୍ଚ୍ଚନା ବିବର୍ଜିତ-ଧର୍ମ ଈଶ୍ୱର ନ ମାନିଲେ ମଧ୍ୟ ବେଦ, ବ୍ରାହ୍ମଣ, ଯାଗଯଜ୍ଞର କର୍ତ୍ତୃତ୍ୱ ଅସ୍ୱୀକାର କଲେ ମଧ୍ୟ ଜୈନ ଧର୍ମ କିନ୍ତୁ ବ୍ରାହ୍ମଣ୍ୟ ଆଚାର ସଂସ୍କାରର ସବୁ କଥା ପ୍ରତ୍ୟାଖ୍ୟାନ କରିନାହିଁ ଏବଂ ଏହା କରି-ନାହିଁ ବୋଲି ଜୈନ ଧର୍ମ ଦେଶ ବାହାରକୁ ଯାଇ ନପାରିଲେ ମଧ୍ୟ, ହିନ୍ଦୁ ଭାରତରେ ସ୍ୱରୂପତା ଲାଭ କରିନାହିଁ । ଆଜି ପର୍ଯ୍ୟନ୍ତ ତାହା ସଜୀବ ଅଛି । ଜଗତ ଚିନ୍ତା ଓ ଜୀବନ ଦର୍ଶନ କ୍ଷେତ୍ରରେ ବୌଦ୍ଧ ଓ ଜୈନମାନଙ୍କ ମଧ୍ୟରେ କେବେ ଐକ୍ୟ ଦେଖାଯାଏ । ବୌଦ୍ଧମାନଙ୍କ ପ୍ରଧାନ ଦୁଇଟି ଶାଖା ହୀନଯାନ ଓ ମହାଯାନ ପରି ଜୈନମାନଙ୍କର ପ୍ରଧାନ ଦୁଇଟି ଶାଖା— ଦିଗମ୍ବର ଓ ଶ୍ୱେତାମ୍ବର ।

ଭଦ୍ରବାହୁ ନାମକ ଗୁରୁଙ୍କ ଅନୁଗାମୀ ଦିଗମ୍ବରମାନେ ସର୍ବ ସଂସ୍କାର ମୁକ୍ତ ଉଲଙ୍ଗତାର ଆଦର୍ଶ ମାନନ୍ତି ଓ ଇନ୍ଦ୍ରିୟ ନିଗ୍ରହ ଓ କୃଚ୍ଛତା ଦ୍ୱାରା ଆତ୍ମା ଶୁଦ୍ଧି ଲାଭ ହୁଏ ବୋଲି ମନେ କରନ୍ତି ଶ୍ୱେତାମ୍ବରମାନେ ଗୃହୀ ଓ ସେମାନେ ବସ୍ତ୍ର ବ୍ୟବହାର କରନ୍ତି । ଜୈନମାନେ ବୌଦ୍ଧମାନଙ୍କ ପରି ବିଶ୍ୱାସ କରନ୍ତି ଯେ କର୍ମ ଅନୁସାରେ ହିଁ ମଣିଷକୁ ଜନ୍ମ ଜନ୍ମାନ୍ତର ପଥରେ ବୁଲିବାକୁ ପଡେ ଏବଂ କର୍ମକ୍ଷୟ ଦ୍ୱାରା ଜନ୍ମ ରହିତ ହେବାକୁ ହୁଏ । ସେହି କର୍ମ ବନ୍ଧନ ବିଚ୍ୟୁତ ଅବସ୍ଥାକୁ ବୌଦ୍ଧମାନେ 'ନିର୍ବାଣ' ଜୈନମାନେ 'ଅନେକାନ୍ତ' ବା ନିର୍ବାଣ ବୋଲି କହନ୍ତି । ବୌଦ୍ଧମାନଙ୍କ ପରି ଜୈନମାନେ ମଧ୍ୟ ବିଶ୍ୱ ଜଗତକୁ ଜୀବ ଓ ଅଜୀବ ଦୁଇ ପ୍ରଧାନ ଭାଗରେ ଭାଗ କରନ୍ତି ।

## ଭାରତରେ ଖ୍ରୀଷ୍ଟଧର୍ମ—

ଖ୍ରୀଷ୍ଟାବ୍ଦ ପ୍ରଥମ ଶତକର କୌଣସି ଏକ ସମୟରେ ସେଣ୍ଟଥମାସ ତାଙ୍କର କେତେଜଣ ଅନୁଗାମୀଙ୍କ ସହ ଦକ୍ଷିଣ ଭାରତର କେରଳ ଉପକୂଳକୁ ଆସିଥିଲେ । ସେଠାରୁ ମାନ୍ଦ୍ରାଜ ଯାଇ ଗୋଟିଏ ଗୀର୍ଜା ସ୍ଥାପନ କଲେ । କିନ୍ତୁ ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀର ପ୍ରଥମ ଭାଗରେ ଖ୍ରୀଷ୍ଟଧର୍ମାବଲମ୍ବୀ ପର୍ତ୍ତୁଗୀଜ, ଓଲନ୍ଦାଜ, ଫରାସୀ ଓ ଇଂରେଜ ବଣିକମାନେ ଜାହାଜରେ ଭାରତକୁ ଆସିବାକୁ ଲାଗିଲେ । ସମ୍ମୁଖରେ କ୍ରୁଶଧାରୀ ପାଦ୍ରୀ ଓ ପଶ୍ଚାତରେ ବନ୍ଧୁକଧାରୀ ସିପାହୀ ନେଇ ବିଭିନ୍ନ ସ୍ଥାନରେ ହାଜର ହେଲେ ସେମାନେ । ବାଣିଜ୍ୟ ଘାଟି ଗଢ଼ି ସୁଯୋଗ ଅପେକ୍ଷାରେ ନିଜ ନିଜ ମଧ୍ୟରେ ଦ୍ୱନ୍ଦ୍ୱ ବିବାଦ କରି ଶେଷରେ ଇଂରେଜମାନେ ଅଷ୍ଟାଦଶ ଶତାବ୍ଦୀରେ ସମସ୍ତ ହରାଇ ବଙ୍ଗଳାରେ ଶାସନ କଲେ ଓ ପରେ ପରେ

ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ସାରା ଭାରତ ପରିବ୍ୟାପ୍ତ ହେଲେ । ପର୍ତ୍ତୁଗୀଜ ଓ ଫରାସୀମାନେ ସନ୍ଧି ସୂତ୍ରରେ ସାମାନ୍ୟ ଅଞ୍ଚଳର ଅଧିକାରୀ ହେଲେ କିନ୍ତୁ ଇଂରେଜମାନଙ୍କ ପ୍ରଚେଷ୍ଟା ସତ୍ତ୍ୱ ଖ୍ରୀଷ୍ଟଧର୍ମ ପ୍ରସାରିତ ହେଲା । ଖ୍ରୀଷ୍ଟଧର୍ମ ଭାରତ ବର୍ଷରେ ପ୍ରାୟ ଦୁଇଶହ ବର୍ଷ ହେଲା ଆସିଛି କିନ୍ତୁ ତାହା ଦୁଇ ହଜାର ବର୍ଷର ଧର୍ମ । ତଳସ୍ତରର ନିଷ୍ପେଷିତ ହିନ୍ଦୁମାନେ ଯେପରି ୧୨ଶ ଶତକରେ ରାଜ ଶକ୍ତିର ପୀଡ଼ନରୁ ଓ ପ୍ରଲୋଭନରୁ ଇସଲାମକୁ ଗ୍ରହଣ କରିଥିଲେ, ୧୮ଶ ଓ ୧୯ଶ ଶତକରେ ଖ୍ରୀଷ୍ଟାନ ପ୍ରଚାରକମାନଙ୍କ ପ୍ରଭାବ ଓ ଶାସକଙ୍କ ପ୍ରଲୋଭନରୁ ସେହି ନିର୍ଯ୍ୟାତିତମାନଙ୍କ ମଧ୍ୟରୁ ଏକାଂଶ ସ୍ୱାଗତ କଲେ ଖ୍ରୀଷ୍ଟ ଧର୍ମକୁ । ଏହାର ପ୍ରତିକ୍ରିୟାରେ ବ୍ରାହ୍ମଧର୍ମ ପ୍ରଭୃତି ସୃଷ୍ଟି ହେଲେ ମଧ୍ୟ ଭାରତର ହିନ୍ଦୁଧର୍ମ ମଧ୍ୟରୁ ବର୍ଣ୍ଣାଶ୍ରମୀ ଚତୁର୍ବର୍ଣ୍ଣକୁ ମିଶାଇ ପାରିଲେ ନାହିଁ ।

## ଭାରତରେ ଇସଲାମ—

ସାମ୍ରାଜ୍ୟ ବିସ୍ତାର ତରବାରି ସାହାଯ୍ୟ ବ୍ୟତୀତ ଓ କେଉଁଠାରେ କେବେହେଲେ ସମ୍ଭବ ହୋଇନାହିଁ । ଇସଲାମ କ୍ଷେତ୍ରରେ ତାହାର ବ୍ୟତିକ୍ରମ ହୋଇନାହିଁ । ପଶ୍ଚିମ ଏସିଆରେ ରୋମାନ ସାମ୍ରାଜ୍ୟ, ଦକ୍ଷିଣ ପୂର୍ବ ଏସିଆରେ ଶୈଳେନ୍ଦ୍ର ସାମ୍ରାଜ୍ୟ, ପୂର୍ବ ଇଉରୋପ ପର୍ଯ୍ୟନ୍ତ ପ୍ରସାରିତ ମଙ୍ଗୋଲ ସାମ୍ରାଜ୍ୟ—ସବୁ ବଳ ପୂର୍ବକ ଅନୁପ୍ରବେଶ ଦ୍ୱାରା ହୋଇଛି । ମୁସଲମ ସମ୍ପ୍ରଦାୟ ମଧ୍ୟ ଏହି ପ୍ରକାର ଧାରାରେ ଘଟିଛି । ତାହାକୁ ମୁସଲମ ଐତିହାସିକମାନେ ଜାତୀୟ ଗୌରବ ଭାବେ ବର୍ଣ୍ଣନା କରିଛନ୍ତି ।

ଇସଲମିକ ବିଶ୍ୱଭାବନା ମଧ୍ୟ ଏହାର ପରିପନ୍ଥୀ ନୁହେଁ । ସାରା ସଂସାରକୁ ସେ ଦୁଇ ଭାଗରେ ଭାଗ କରିଛନ୍ତି । ତାହା ହେଉଛି —ଦାର-ଉଲ-ଇସଲାମ ଏବଂ ଦାର-ଉଲ-ହାରବ । ଦାର-ଉଲ-ହାରବକୁ ସ୍ୱଧର୍ମରେ ଆଣିବା ଲାଗି ଧର୍ମଶାସ୍ତ୍ର ନିର୍ଦ୍ଦେଶ ଦେଇଛି—ଜେହାଦ ପାଇଁ ଏବଂ କହିଛି ସେଥିରେ ମୃତ୍ୟୁ ହେଲେ ମୃତ ବ୍ୟକ୍ତି ହେବେ ଶହୀଦ ଜୟୀ ହେଲେ ବିଜେତା ହେବେ —'ଗାଜୀ' । କହିଛି-ବିଧର୍ମୀ-ମାନଙ୍କୁ ହୟତ ଧର୍ମାନ୍ତରିତ କରିବେ, ନଚେତ୍ 'କୋତଲ ଆମ' ବା ସମ୍ମିଳେ ନିପାତ କରିବେ, ଅସମ୍ଭବ ହେଲେ ସେମାନଙ୍କୁ 'ଜିମ୍ମି' କରି ରଖିବେ ଏବଂ ମୁଣ୍ଡ ଶୁଳ୍କ ନେବେ । ଏହି ଶୁଳ୍କର ନାମ ଭାରତରେ ହେଲା—'ଜିଜିଆ' ।

ଭାରତରେ ଖ୍ରୀଷ୍ଟ ପୂର୍ବ ୫ମ ଶତାବ୍ଦୀରେ ବୁଦ୍ଧଙ୍କ ଆବିର୍ଭାବ, ତାହାର ପାଞ୍ଚ ଶହ ବର୍ଷ ପରେ ଖ୍ରୀଷ୍ଟଙ୍କର ଏବଂ ଖ୍ରୀଷ୍ଟଙ୍କ ଛଅ ଶହ ବର୍ଷ ପରେ ମହମ୍ମଦଙ୍କର । ଏମାନେ ସନ୍ନକୁ ପଛ ଏସିଆରେ ତିନୋଟି ବୃହତ ଧର୍ମ ପ୍ରବର୍ତ୍ତନ କରିଛନ୍ତି । ପୃଥିବୀର ମୁଖ୍ୟ ଧର୍ମଗୁଡ଼ିକ ପ୍ରାଚ୍ୟ ଭୂମିରେ ଜନ୍ମି-ଛନ୍ତି । ତା' ମଧ୍ୟରୁ ଜରଥୃଷ୍ଟ, ଇହୁଦୀ, ଖ୍ରୀଷ୍ଟାନ ଓ ଇସଲାମ-ଏହି ଚାରୋଟି ଧର୍ମର ଉତ୍ପତ୍ତିସ୍ଥଳ ମଧ୍ୟ ପ୍ରାଚ୍ୟ । ଏମାନେ ନାନା ଭାବେ ପରସ୍ପର ସମ୍ପୃକ୍ତ ମଧ୍ୟ ।

ଭାରତରେ ଛଅ ଶହ ବର୍ଷ ବ୍ୟାପୀ ମୁସଲମ ଶାସନର କ୍ରିୟା ପ୍ରତିକ୍ରିୟା ଜାଣିବା ପାଇଁ କେତେକ ଆଲୋ-ଚନା କରାଯାଉଛି । ୧୨ଶ ଶତକରେ ପ୍ରଥମେ ଭାରତ ବର୍ଷରେ ମୁସଲମ ଶାସନ ପ୍ରତିଷ୍ଠିତ ହେଲା ୧୮ଶ ଶତକ ପର୍ଯ୍ୟନ୍ତ ତାର ଧାରା ଅବ୍ୟାହତ ରହିଲା । ଏହି ସୁଦୀର୍ଘ କାଳ ମଧ୍ୟରେ ଖିଲଜି,ତୋଗଲକ,ଲୋଦି ପ୍ରଭୃତି ବଂଶ କୌଣସି ସ୍ଥାୟୀ ଶାସନ ଗଠନ କରିପାରିନାହାନ୍ତି । ତାହା କରିଛନ୍ତି ମୋଗଲ-ମାନେ ଏବଂ ବାବରଙ୍କଠାରୁ ଆରମ୍ଭ କରି ଆଓରଙ୍ଗଜେବ ପର୍ଯ୍ୟନ୍ତ ଛ' ପୁରୁଷ ଏକାଦି କ୍ରମେ ଭାରତ ଶାସନ କରିଛନ୍ତି । ଭାରତକୁ ଏକ କେନ୍ଦ୍ରୀୟ ଶାସନରେ ସଂହତ କରିବା, ଉନ୍ନତ ସ୍ଥାପତ୍ୟ, ଭାସ୍କର୍ଯ୍ୟ, ସଙ୍ଗୀତ ଓ କଳା କୃଷ୍ଟିରେ ସମୃଦ୍ଧ କରିବା, ଏକ ପ୍ରକାର—ଭୂମି ବ୍ୟବସ୍ଥା ପ୍ରଚଳନ, ରାଜସ୍ୱ ବ୍ୟବସ୍ଥା, ଏକ ମୁଦ୍ରା ନୀତିର ଅଧୀନକୁ ଆଣିବା ଇତ୍ୟାଦି ବହୁ କାର୍ଯ୍ୟ ସେହିମାନେ ପ୍ରଥମେ କରିଛନ୍ତି । ସାହିତ୍ୟ ସଂସ୍କୃତିର ପୃଷ୍ଠପୋଷକତା ମଧ୍ୟ କରିଛନ୍ତି । କିନ୍ତୁ ପ୍ରତିମା ପୂଜକ, ଗୁରୁବାଦୀ, ଅବତାରବାଦୀ, ଅଦୃଷ୍ଟ,ଓ ପୁନର୍ଜନ୍ମବାଦୀ ହିନ୍ଦୁମାନଙ୍କ ସହ ସେମାନଙ୍କର ଧର୍ମୀୟ ସମଝୋତା ହୋଇ-ପାରିନାହିଁ । ଭାରତରେ ହିନ୍ଦୁରାଜାର ମୁସଲମାନ ମନ୍ତ୍ରୀ ଓ ସେନାପତି, ମୁସଲମାନ ରାଜାର ହିନ୍ଦୁ ମନ୍ତ୍ରୀ ଓ ସେନାପତି ରହିଥିବା ସତ୍ତ୍ୱେ ମଧ୍ୟ ଜନସାଧାରଣଙ୍କ ମଧ୍ୟରେ ଧର୍ମୀୟ ଏକତା ସୃଷ୍ଟି ହୋଇ ପାରିନଥିଲା ।

ନିମ୍ନ ଶ୍ରେଣୀର ନିଗୃହୀତ ହିନ୍ଦୁମାନେ ଇସଲାମ ଦୀକ୍ଷା ନେଇ ରାଜଶକ୍ତିର ପୋଷକତା କରିଛନ୍ତି । ନୈଷ୍ଠିକ ହିନ୍ଦୁ-ମାନେ ଦୂରେଇ ରହିଛନ୍ତି । ଶାହାଜାହାନ ପୁତ୍ର ଦାରାସିକୋ ଉପନିଷଦ ଓ କୋରାନର ଦାର୍ଶନିକ ଏକତ୍ୱ ପ୍ରତିପନ୍ନ କରିବା ସତ୍ତ୍ୱେ (ଆଲ୍ଲୋପନିଷଦ ରଚନା), ସାଧୁ, ସନ୍ଥ, ଚୈତନ୍ୟ,

ନାନକ, କବୀର, ଦାଦୁଙ୍କଠାରୁ ବିବେକାନନ୍ଦ ପ୍ରମୁଖ ହିନ୍ଦୁ ମୁସଲମାନ ନିର୍ବିଶେଷରେ ସମସ୍ତଙ୍କୁ ଏକ ଧର୍ମୀୟ ଐକ୍ୟରେ ବାନ୍ଧିବାକୁ ଚାହିଁବା ସତ୍ତ୍ୱେ ଏକତ୍ୱ ବ୍ୟାହତ ହୋଇଛି ହିନ୍ଦୁ ମାନଙ୍କରେ ଲୋକ ସଂଖ୍ୟାର ଆଧିକ୍ୟ ଏହାର ଅନ୍ୟତମ କାରଣ ହୋଇପାରେ । ରାଜା ଓ ପ୍ରଜାଙ୍କ ମଧ୍ୟରେ ଶୋଷକ ଶାସକର ସାମନ୍ତବାଦୀ ବ୍ୟବସ୍ଥାରେ ସମ୍ପୃକ୍ତ କେଉଁଠାରେ କେବେହେଲେ ହୋଇନାହିଁ । କେବଳ ଖ୍ରୀଷ୍ଟାନ, ଧର୍ମାବଲମ୍ବୀ ଦେଶ ବା ମୁସଲମାନ ଧର୍ମାବଲମ୍ବୀ ଦେଶରେ ପ୍ରଜାନିଗ୍ରହ ଓ ଉତ୍ପୀଡ଼ନ ର ସମ୍ବନ୍ଧ ବିଦ୍ୟମାନ ସେଥିପାଇଁ ଦେଶେ ଦେଶେ ଯୁଗେ ଯୁଗେ ଏତେ ବିଦ୍ରୋହ, ବିପ୍ଳବ !

ମଧ୍ୟ ଯୁଗରେ ଭାରତ ଥିଲା ସାମନ୍ତତାନ୍ତ୍ରିକ ରାଷ୍ଟ୍ର । ସାମନ୍ତତାନ୍ତ୍ରିକ ସ୍ୱାଧୀନତାର ଲାଭ ପାଇଁ କେନ୍ଦ୍ର ଶାସନ ବିରୁଦ୍ଧରେ ଲଢ଼େଇ ଚାଲୁଥିଲା । ଏହାର ଉଦାହରଣ— ଶିଖ, ରାଜପୁତ ଓ ମରାଠା ଜାତିର ଅଭ୍ୟୁଦୟ । ଏହା ଫଳରେ ଏକକେନ୍ଦ୍ରିକ ମୁସଲମାନ ଶାସନ ଭାଙ୍ଗି ପଡ଼ିଲା ଆଓରଙ୍ଗଜେବଙ୍କ ସମୟରୁ । ତାପରେ ଶାସନ ଭଙ୍ଗାଗଣ ।

## ସର୍ବଭାରତୀୟ ସମନ୍ୱୟ—

ଆଜି ସର୍ବ ଭାରତୀୟ ସମନ୍ୱୟ କଥା ଶୁଣାଯାଏ । ଅସଂଖ୍ୟ ଶ୍ରେଷ୍ଠ ବଡ଼ ଜନପଦ ଓ ବିଭିନ୍ନ ଭାଷାଭାଷି ଏବଂ ଆଗୁର ସଂସ୍କାରରେ ଅଭ୍ୟସ୍ତ ଅସଂଖ୍ୟ ଜାତିଗୋଷ୍ଠୀ ଅଧିଷ୍ଠି ଓ ଭାରତ ବର୍ଷ ଏହି ଭାରତ ବର୍ଷର ଗୋଟିଏ ଅଂଶ ସହ ଅନ୍ୟ ଅଂଶର ଐକ୍ୟ ପ୍ରତିଷ୍ଠିତ ହୋଇପାରି ନଥିବାରୁ ସେପରି ପରସ୍ପର ମଧ୍ୟରେ ଅବିରାମ ଯୁଦ୍ଧ ବିଗ୍ରହରେ ମାତି ରହିଥିଲେ ରାଜାମାନେ, ସେହି ମଣି ଏଦେଶକୁ ଆସିଥିଲେ ଗ୍ରୀକ୍, ହୁନ୍, ତୁର୍କୀ, ମୋଗଲ, ପଠାଣ, ଇଂରେଜ, ଫରାସୀ ପ୍ରଭୃତି ଓ ସେମାନେ କେବଳ ଆସିଥିଲେ ନୁହେଁ, ଭାରତର ଅସଂହତ କାଳରୁ ବିଭିନ୍ନ ସ୍ଥାନ ଦଖଲ କରିଥିଲେ ମଧ୍ୟ । ବିଭିନ୍ନ ସମୟରେ ଅଶୋକ, ଖାରବେଳ, ସମୁଦ୍ରଗୁପ୍ତ, ହର୍ଷବର୍ଦ୍ଧନ, ଆକବର ଚେଷ୍ଟା ଇଂରେଜ ଶାସନ କାଳରେ ଇଂରେଜ ଭାଷା ହୋଇଛି ଭାରତ ଏକାତ୍ମତାର ପ୍ରଧାନ ବାହକ । ସେହି ଇଂରେଜକୁ ଆଶ୍ରୟ କରି ଆମର ସ୍ୱାଧୀନତା ଆନ୍ଦୋଳନ କାଳରେ ଏକ ଭାରତୀୟତ୍ୱର ଭାବ ମୂର୍ତ୍ତି ମଧ୍ୟ ଗଢ଼ି ଉଠିଛି ନାନା ଭାବରେ । ରେଲପଥ, ଟେଲିଗ୍ରାଫ ଓ ଇଂରେଜୀ ଭାଷା ଭାରତକୁ ଏକ ରଜ୍ଜୁରେ ବାନ୍ଧିବାକୁ ଚେଷ୍ଟା କରିଛି— ଅବଶ୍ୟ ତାହା ପରେ ଦେଶର ସ୍ୱାଧୀନତା ଓ ବ୍ରିଟିଶଙ୍କ ପ୍ରସ୍ଥାନକୁ ମଧ୍ୟ ତ୍ୱରାନ୍ୱିତ କରି ଦେଇଛି । ବିଭିନ୍ନ ଧର୍ମ ସମ୍ପ୍ରଦାୟ, ଧର୍ମ ପ୍ରଚାରକ, ମଠ, ମନ୍ଦିର, ମସଜିଦ୍, ଚର୍ଚ୍ଚ, ଗୀର୍ଜା, ପ୍ରତିଷ୍ଠା ସତ୍ତ୍ୱେ ଏକତା— ସଂହତି ଓ ସାମ୍ପ୍ରଦାୟିକ ସମ୍ପ୍ରୀତି ପ୍ରତିଷ୍ଠିତ ହୋଇପାରିନାହିଁ । ଜନ ସାଧାରଣଙ୍କ ଶୋଷଣ କରିବା ଦୂର ହୋଇନାହିଁ । ସଂହତି ଉଦ୍ୟମ କ୍ରିୟାଶୀଳ ଥିବା ସତ୍ତ୍ୱେ ମଧ୍ୟ ଅସଂହତିର ଧ୍ୱନି ପ୍ରତିଧ୍ୱନିତ ହୋଇଉଠୁଛି ବିଭିନ୍ନ ଭାବରେ ।

ଆମର ଏହି ସମୟ କାଳରେ ବିଂଶ ଶତାବ୍ଦୀ ଶେଷ ହେବାକୁ ଯାଉଛି । ସବୁକଥାର ଠିକନଖି ବିସ୍ତର ଏହି ପ୍ରବନ୍ଧର ପରିସରରେ ସମ୍ଭବ ନୁହେଁ । ସ୍ତ୍ରୀ ଶିକ୍ଷା ବିସ୍ତାର ରେଡ଼ିଓ, ଟେଲିଭିଜନ, ରେଳପଥ, ସଡ଼କ ପଥର ପ୍ରସାର ବୈଦ୍ୟୁତିକ ଆଲୋକ ଓ ସମ୍ବାଦପତ୍ରର ପ୍ରସାର, କମ୍ପ୍ୟୁଟର ଓ ଦ୍ରୁତଗାମୀ ଯାନବାହାନର ପ୍ରସାର ଗାଁମାନଙ୍କରେ ପ୍ରବେଶ କରିଛି । ହାଇସ୍କୁଲ, କଲେଜ, ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା ସହିତ ସହଶିକ୍ଷାର ପ୍ରଚଳନ—ପ୍ରସାରିତ । ଏସବୁର ସୁଯୋଗ ଜାତି ଭେଦ ଦୂର କରିବାରେ ସାହାଯ୍ୟକାରୀ ହେଉଛି । ଆନ୍ତ-ର୍ଜାତି ଅସବର୍ଣ୍ଣ ବିବାହ ସୃଷ୍ଟିରେ ଏସବୁ ଯେପରି ସାହାଯ୍ୟ କରୁଛି— ବିବାହ ବିଚ୍ଛେଦ ପାଇଁ ମଧ୍ୟ ସାହାଯ୍ୟ କରୁଛି । ସାମାଜିକ ପରିବର୍ତ୍ତନ ମନ୍ଥର ହେଲେ ସମାଜରେ ବିପ୍ଳବ ସୃଷ୍ଟି ହୁଏ । ନଚେତ ପତନ ସୃଷ୍ଟି କରେ । ଏ ଦୁଇଟିରୁ କେଉଁଟି ଏକ-ବିଂଶ ଶତାବ୍ଦୀରେ ଘଟିବ ତାହା ସାମାଜିକ ସୃଷ୍ଟି ହେଉଥିବା ପ୍ରଗତିର ସଂଗଠିତ ରୂପ ଓ ରୂପାନ୍ତର ଉପରେ ନିର୍ଭର କରେ । ସ୍ୱାଧୀନତାର ପର୍ବ ଦିନପରେ ଇଂରେଜ ଶିକ୍ଷିତ ସମ୍ପ୍ରଦାୟ ମଧ୍ୟରେ ଯେପରି ଶିକ୍ଷକ, ଅଧ୍ୟାପକ, ପୋଲିସ, ମାର୍କେଟ୍ ଓ ମୁନାଫାଖୋର ଏକ ଶ୍ରେଣୀ ସୃଷ୍ଟି କରି ପରିବର୍ତ୍ତନକୁ ଧରି ରଖିବାକୁ ଚେଷ୍ଟା କରୁଛନ୍ତି, ସେହିମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ମଧ୍ୟ ସ୍ୱଦେଶ ଭକ୍ତରୂପେ ନୂତନ ସମାଜବାଦୀ ଭାରତ ଗଢ଼ିବାରେ ପ୍ରୟାସୀ ଓ ଧାରାପାତ ଉଦ୍ୟମ ଅବ୍ୟାହତ ରଖିଛନ୍ତି । ବିଂଶ ଶତାବ୍ଦୀର ଏହି ଶେଷ ପାଦରେ ପୃଥିବୀର ସୋଭିଏତ ଓ ସମାଜବାଦୀ ସମାଜ ଓ ପୂର୍ବ ଇଉରୋପୀୟ ସମାଜବାଦୀ ସମାଜରେ ବିପର୍ଯ୍ୟୟ ଓ ସଂକଟ ଦେଖାଦେଇଥିଲେ ମଧ୍ୟ ଭାରତ ପାଇଁ ପୁଞ୍ଜିବାଦୀ ସମାଜ ବ୍ୟବସ୍ଥା ସେ ସୁଖ ସମୃଦ୍ଧିର ଏକ ମାତ୍ର ବ୍ୟବସ୍ଥା ତାହା କେହି ହେଲେ ବିଶ୍ୱାସ କରୁନାହାନ୍ତି । ତେଣୁ ଭାରତ ସମ୍ବିଧାନରେ ଗୃହୀତ ସମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠା ଲାଗି ଅସ୍ପୃଶ୍ୟତା ନିବାରଣ, ବହୁବିବାହ ନିରୋଧ, ବିଧବା ବିବାହ,

ଅସବର୍ଣ୍ଣ ବିବାହ, ନାରୀ ଶିକ୍ଷା ଓ ଅର୍ଥନୈତିକ ସ୍ୱାଧୀକାର ପ୍ରଭୃତିର ପରିବର୍ତ୍ତନ ପାଇଁ ଆନ୍ଦୋଳନ ତୀବ୍ରରେ ହେଉଛି । ସର୍ବ ପ୍ରକାର ଦାସତ୍ୱ ଶୃଙ୍ଖଳରୁ ମୁକ୍ତ ହୋଇ ନୂତନ ପ୍ରାଣ ଶକ୍ତିରେ ଦେଶ ଗଢ଼ିବା ଲାଗି ଶ୍ରମଜୀବୀ ଜନତା ଶୋଷଣ କବଳରୁ ମୁକ୍ତି ଲାଭ ପାଇଁ ବାସ୍ତବବାଦୀ ପ୍ରଚେଷ୍ଟା ଓ ଆନ୍ଦୋଳନ ଅବ୍ୟାହତ ରଖିଛନ୍ତି ଓ ରହିବ । ଏହି ପରିପ୍ରେକ୍ଷୀରେ ଆମ ଶାସ୍ତ୍ର ସଂସ୍କୃତିର ବାସ୍ତବବାଦୀ ଆଲୋଚନା ଯେ ଅଧିକ ଭାବେ ଆବଶ୍ୟକ ସେଥିରେ ସନ୍ଦେହ ନାହିଁ । ସେହି ଦିଗରେ ଏହି ପ୍ରବନ୍ଧ ଏକ କ୍ଷୁଦ୍ର ପ୍ରୟାସ ମାତ୍ର ।

ଅଧ୍ୟାପକ, ବିଜ୍ଞାନ କଲେଜ
ଝାଞ୍ଜିଲକାଟୁ



# ପରବାୟୁ ନାହିଁ

**ରବି ସିଂ**

ପରବାୟୁ ନାହିଁ, ଖସୁ ଏ ପତାକା
ପୁଣି ହେବ ଉଡ୍ଡୀନ,
ପୁଣି ତ ପାଳିତ ହେବ ଦୁନିଆରେ
ସମାଜବାଦର ଲୋହିତ ଜନ୍ମ ଦିନ ।
        ଯେ ଲାଲ୍ ପତାକା ଲେନିନ୍ ରଚିତ
        ଦାଆ ଓ ହାତୁଡ଼ି ତାରକା ଖଚିତ
        ଖସାଇବ ତାକୁ କିଏ ?
ଯେହି ପତାକାର ରଙ୍ଗ ଉକୁଟେ ପ୍ରତିଟି ସୂର୍ଯ୍ୟୋଦୟେ ।
ମାନବ ଜାତିର ମୁକ୍ତିର ତାରା ମହାଶୂନ୍ୟରେ ଜଳେ,
ମଜଦୁର ହାତେ ଥିଲା, ଅଛି, ଥିବ
କୃଷକର ହାତେ ଦାଆର ବିଭବ
ହାତୁଡ଼ିର ସାଥେ ଯୁକ୍ତ ହୋଇବ
        ଶୋଷଣ-ଅନ୍ଧକାର ।
ଧରାସ୍ୱର୍ଗରେ ପଶିଛି ତ ପଶୁ
        ଧନତନ୍ତ୍ରର ଦୈତ୍ୟ-ଦାନବ ଦଳ,
ଏକାଠି ହୋଇଛି ଆଜି ଜର୍ମାନୀ
        ନାତ୍ସୀବାଦର ପତା-ଅନୁଡ଼ଶାଳ ।
ଆଂକ ଲଲାଟେ ସ୍ୱସ୍ତିକ୍ ଟୀକା
        ଗୋପନେ ହେଉଛି ଠିଆ,
କ୍ଷିତି ଆତଙ୍କେ ପ୍ରେତସମ ଥରେ
        ସସାଗରା ଏ ଦୁନିଆ ।
ଇତିହାସ ଚକ ପଛକୁ ବୁଲାଏ ଶଇତାନ କୁରୁବଳ,
ନଦନଦୀ, ବନ, ସମୁଦ୍ର, ଗିରି, ଆକାଶର ପଞ୍ଜର
କାନ୍ଦି ଉଠୁଛି ଯଥା ଅସହାୟ ଶିଶୁ,
ଆତତାୟୀ ଆଜି ରକ୍ତପିପାସୁ ହୋଇ ତ ଉଠିଛି ଯୀଶୁ ।
'ବାଇବଲ୍' ଠାରୁ ରାଇଫଲ୍ କହେ କଥା,
ଲିଭିଥିଲେ ବି ତ ଦ୍ୱିତୀୟ ବିଶ୍ୱ ମହାସମରର ଚିତା ।
ସମରବାଦର ପୃଥୁଳ ଉଲାଲ୍,
ଶ୍ୟାମଳ ଗ୍ରହରେ ବୁଲୁଛି ଦଲାଲ୍
ହୁସିଆର ଯେତେ ମୁକ୍ତି ସେନାନୀ, ଏବେ ତ ମଧ୍ୟ ରାତି,
ପରବାୟୁ ନାହିଁ ଖସିଛି ପତାକା
ସୂର୍ଯ୍ୟ ହୋଇବ ଉଦୟର ମୁଖା
        ପୁଣି ତ ପାହିବ ରାତି,
ନାହିଁ କିଛି ଆନଗତି ।

ନିଃସଙ୍ଗ ନିବାସ
କଟକ-୧୦

# କମରେଡ୍ ଲେନିନ୍‌ଙ୍କୁ କହୁଛି

● ଭ୍ଲାଦିମିର ମାୟାକୋଭସ୍କି

(୧୯୨୯ରେ ସୋଭିଏତ୍ ୟୁନିୟନ୍‌ରେ ସମାଜତନ୍ତ୍ର ନିର୍ମାଣର ଏକ ସଂକଟମୟ ସନ୍ଧିକ୍ଷଣରେ ଏହି କବିତାଟି ରଚନା କରିଥିଲେ ମାୟାକୋଭସ୍କି । ତାଙ୍କର ଏକ ଦୀର୍ଘ କବିତାର କେତେକାଂଶ……)

କମ୍ରେଡ୍ ଲେନିନ୍
ଆସିଛି ମୁଁ ରିପୋର୍ଟ ଦେବାକୁ
ତୁମରି ପାଖକୁ ।
ଆମେ ଅନ୍ଧକାରରୁ କୋଇଲା ତୋଳୁଛୁ
ପ୍ରଖର ଅଗ୍ନିରେ ଇସ୍ପାତ ଗଢ଼ୁଛୁ,
ଅଗଣିତ ମଣିଷମାନଙ୍କୁ ଯୋଗାଇ ଚାଲିଛୁ
ଖାଦ୍ୟ, ବସ୍ତ୍ର ଓ ଗୃହ ।
ସବୁ ଠିକ୍ ଚାଲିଛି କମ୍ରେଡ୍
ତଥାପି ଆଜି ମଧ୍ୟ ଚାରିଆଡ଼େ
ବୋଝେଇ ହୋଇ ରହିଛି କେତେ ଯେ ଆବର୍ଜନା !
ତୁମେ ନାହିଁ, ଏହି ସୁଯୋଗ ନେଇ,
ମୁଣ୍ଡ ଟେକିଛି କେତେ ଦଳାଦଳି,
ସୀମାନ୍ତ ପାଖରେ ଶାଗୁଣାର ଦଳ ବସିଛନ୍ତି
ଏଣେ ଭିତରେ ମଧ୍ୟ ଅଛି ଅନେକ ରଦ୍ଦିମାଲ !
ଲାଲଫିତା ବନ୍ଧା ଅମଲାର ଦଳ
ଧର୍ମୀ, ଜୋତଦାର, ଫାଙ୍କିବାଜ, ମଦ୍ୟପ,
ମତାନ୍ଧ ଆତ୍ମ ଚାଟୁକାର ଅଛନ୍ତି କେତେ—
ମୟୂର ପରି ପୁଚ୍ଛ ଦୋହଲାଇ
ବୁଲିବୁଲି କରନ୍ତି ସେମାନେ
ସେମାନଙ୍କ ଛାତିରେ
ଝଲସି ଉଠେ ପଦକ ମାଳମାଳ !
ଘଗରେ ଜଳ ଉଠୁ ଆମେ, ତଥାପି ମନରେ ଆସେ
ଏମାନଙ୍କୁ ହଟାଇବା ବଡ଼ କଠିନ କାମ ।
ବୁକୁରେ ସାହସ ବାନ୍ଧି ତୁଷାରବୃତ ପ୍ରାନ୍ତରରେ ପୁଣି
କଣ୍ଟା ଜଙ୍ଗଲର ପଡ଼ିଆରେ,
କଳ କାରଖାନା ଖଣିରେ ଓ ବନ୍ଦରରେ—
ତୁମକୁ ହିଁ ରଖି ବୁକୁର ମଝିରେ
ଆମେ ଲଢ଼ି ଚାଲିଛୁ !
କମ୍ରେଡ୍ ଲେନିନ୍……
ଆମେ ଗଢ଼ୁଛୁ
ଆମେ ଭାବୁଛୁ
ଆମେ ବଂଚୁଛୁ
ଆମେ ଲଢ଼ୁଛୁ……

## ॥ ତା'ର କେବେ ପତନ କି ଅଛି ॥

● ବିନୋଦ ମହାରଣା

ଉଡ଼ୁଅଛି ଶ୍ରମିକର ମୁକ୍ତି-ପତାକା
କୋଟି କୋଟି ମେହନତୀ
ହୋଇଛନ୍ତି ଠିଆ—
ତା'ର କେବେ ପତନ କି ଅଛି ?
ନୁହଁ ସେତ ନାଲିକନା, ନୁହଁ ସେ' ପଇସାର —
କୋଟି ଜନତାର ସେ
ରକତରେ ଜୁଆ ।

ଆମେ ତାକୁ ଦେଖିଅଛୁ
ଉଡ଼େ ଫରଫର
କ୍ରାନ୍ତି ନେଇ ବିପ୍ଳବର ପାଶେ —
ଦେଖିଅଛୁ ନୂଆଁ ବିଶ୍ୱସାମ୍ୟ ତା' ଧ୍ୱଜରେ
ପାରୁନାହୁଁ ତାକୁ 'ମୃତ୍ୟୁ' କହି
ସେ ପରା ଅପରାଜେୟୀ
ବିଶ୍ୱ ଇତିହାସେ ।

ଉଡ଼େ ଫରଫର ମୁକ୍ତ ପ୍ରତିଟି ଗଗନେ—
ଉଡ଼ୁଅଛି ନେଇ ଆମ ନିଃଶ୍ୱାସର ବାଣୀ
ସେ କେବେ ଭୁଲିବ ଆମ ସର୍ବହରା ଜାତି
ସିଏ ପରା ସଦ୍ୟ ଭିଜା, ଅନନ୍ତ-ମରମେ ।

ସେହି ଲାଲ୍ ଝଡ଼ିବନି—
କେବେ ଝଡ଼ିବନି,
ବର୍ଷା-ଖରା-ଶୀତ ଅବା ଗୋଲାର ଧମକେ —
ତାକୁ ଯେବେ ଗଢ଼ିଥିଲେ ଶତ ଶ୍ରମିକର ରକ୍ତ
ସହି ଘନ ଦୁଃଖ-କଷ୍ଟ, ତଥାପି ସଂଗ୍ରାମୀ
ହସାଇବ ସାମ୍ୟବାଦ-ମହାନ୍ ମସ୍ତକେ ।

ତା' ଲେନିନ୍ ଦେଇଥିଲେ ବାନ୍ଧି
ପତାକା ଖୁଣ୍ଟରେ—
ଝଲମଲ ତେଜଦିଆ ହାତୁଡ଼ି-ଦାଆକୁ
ଆଜି ବିଶ୍ୱ ବାନ୍ଧିଅଛି
ଖଟିଖିଆ-ସର୍ବହରା-ମେହନତୀ—
ମୁକତିର ପାଗଳ ବାଆରେ ।

ତାକୁ କିଏ ପାରିବନି, ଭାଙ୍ଗିବନି
ଅବା କେହି ପାରିବେନି ଚିରି
ଉଡ଼ୁଅଛି, ଉଡ଼ୁଥିବ
ନୂଆଁ ବାର୍ତ୍ତା ଦେବାପାଇଁ
ଉଡ଼ୁଥିବ ଚିର ଫିରିଫିରି ।

ତାକୁ ଯେବେ ବାନ୍ଧିଥିଲେ
ନଭେମ୍ବର — ଜାର୍ ଶେଷୁ—
ଶୋଣିତର ଇତିହାସ ଦଳ—
ଆଜି ସାତ ଶହ କୋଟି, ଅଙ୍ଗେ ବହି
ପ୍ରଜ୍ୱଳିତ ସ୍ୱପ୍ନ—
ସଲାମୁଛେ ତାକୁ ବାରବାର ।

ଦିଏ ଯିଏ ଶାନ୍ତିବାର୍ତ୍ତା—
ଅସ୍ତ୍ରମୁକ୍ତ-ସ୍ୱାଧୀନ ପୃଥିବୀ,
ଶ୍ରମିକର ଲହୁ ଲୁହ ପଡ଼ିବନି ଭାଜି—
ଉଭା ହେବ ଦୁଆରରେ ନବ ପ୍ରତିଛବି
ତା'ର କେବେ ଭଙ୍ଗା ଅଛି/ଚିରା ଅଛି ?
ରକତରେ ଜୁଡ଼ୁବୁଡ଼ୁ
ଲଢ଼ିମାଡ଼ି ଖରା-ଶୀତ ବହିସିଏ
ଆଣିଥିଲେ ସୁନ୍ଦର ପୃଥିବୀ,
ଆମ ରକତରେ ଭରି ସାମ୍ୟବାଦୀ ରବି ।

ତାର କେବେ ଧ୍ୱଂସ ନାହିଁ
ପତନ ବି ନାହିଁ—
ଉଡ଼ୁଥିବ ଫରଫର ଶାଗୁଆ ଆକାଶେ—
ସେ ପୃଥିବୀ ମେହନତୀ ନର-ନାରୀଙ୍କର
ଉଜ୍ଜ୍ୱଳ ସ୍ତମ୍ଭରେ
ରହିଥିବ ସାରା ଇତିହାସେ ।

ତା ୫-୧-୯୨

# ॥ ସ୍ୱାମୀ ବିବେକାନନ୍ଦଙ୍କର ସମାଜବାଦୀ ଚିନ୍ତାଧାରା ॥

● ସୌରୀବଂଧୁ କର

"ମୁଁ ଜଣେ ସମାଜବାଦୀ । କାରଣ ଏହା ପ୍ରକୃତ ପଦ୍ଧତି ବୋଲି ନୁହେଁ; କିନ୍ତୁ କିଛି ନ ଥିବା ଅପେକ୍ଷା ଅଧ ଖଣ୍ଡେ ରୁଟି ବରଂ ଭଲ ।" ସ୍ୱାମୀ ବିବେକାନନ୍ଦଙ୍କର ସମାଜବାଦୀ ଚିନ୍ତାଧାରା ପ୍ରଚଳିତ ସମାଜବାଦୀ ଚିନ୍ତାଧାରା ଠାରୁ ପୃଥକ । ଏହାକୁ ବିଚାର କରିବାକୁ ହେଲେ ଆମକୁ ସମାଜବାଦ ସମ୍ପର୍କରେ ଜାଣିବାକୁ ହେବ ।

ମଣିଷର ଇଚ୍ଛା ଅନନ୍ତ । ଗୋଟିଏ ଇଚ୍ଛା ପୂରଣ ହେଲେ ପୁଣି ଅନ୍ୟ ଇଚ୍ଛା ଜାଗ୍ରତ ହୁଏ । ସାମାଜିକ ଓ ଅର୍ଥନୈତିକ ପରିବର୍ତ୍ତନ ମଣିଷ ଦୈନନ୍ଦିନ କ୍ଷେତ୍ରରେ ସାମନା କରୁଥିବା ସମସ୍ୟାକୁ ସମାଧାନ କରିବା ପାଇଁ ସୃଷ୍ଟି । ଏପରି ଏକ ସୁସ୍ଥ ସମାଜ ହେବ, ଯେଉଁଠାରେ ଅଭାବ ଓ ଅନାଟନ ନ ଥିବ । ପ୍ରତ୍ୟେକ ଆନନ୍ଦରେ ନିଜ ନିଜର ଇଚ୍ଛା ପୂରଣ କରି ରହିଥିବେ । ଏପରି ଏକ ସୁସ୍ଥ ସମାଜ ଗଠନ ପାଇଁ ମଣିଷ ବାରମ୍ବାର ଚେଷ୍ଟା ଚଳାଇ ଆସୁଛି । ବିଭିନ୍ନ ସମୟରେ ଚିନ୍ତାନାୟକ ଓ ଦାର୍ଶନିକମାନେ ଯେଉଁ ପରିବର୍ତ୍ତନର ସ୍ୱର ଉଠାଇଛନ୍ତି, ତାହା ଏହି ଲକ୍ଷ୍ୟ ଦିଗରେ ପହଞ୍ଚିବା ଲାଗି ଉଦ୍ଦିଷ୍ଟ । ଆଡ଼ମସ୍ମିଥଙ୍କ ମତରେ ବ୍ୟକ୍ତି ସ୍ୱାର୍ଥ ପ୍ରତି ଗୁରୁତ୍ୱ ଦେଲେ ପ୍ରତ୍ୟେକ ଲୋକ ସମାଜରେ ଭଲରେ ରହିବେ । ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥାରେ ଏହି ପ୍ରଣାଳୀ ବ୍ୟକ୍ତିର ବସ୍ତୁବାଦ ଉପରେ ଗୁରୁତ୍ୱ ଦେଇ ତାହା ଅର୍ଥନୀତି ମାଧ୍ୟମରେ ହୋଇପାରିବ ବୋଲି ଦର୍ଶାଇଛନ୍ତି । ପୁଞ୍ଜିବାଦ ବ୍ୟବସ୍ଥା ବ୍ୟକ୍ତିଗତ ସ୍ୱତ୍ୱ ଓ ପରସ୍ପର ମଧ୍ୟରେ ପ୍ରତିଯୋଗିତାକୁ ବୃଦ୍ଧି କରିବ । ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥାରେ ମାଲିକମାନେ ଅଧିକ ବିତ୍ତଶାଳୀ ହୋଇ ଉଠିଲେ । ଔଦ୍ୟୋଗିକ ବିକାଶ ଏବଂ ଯନ୍ତ୍ରର ବ୍ୟବହାର ଦ୍ୱାରା ଶ୍ରମିକ ଶ୍ରେଣୀ ନିୟନ୍ତ୍ରିତ ହେଲେ । ପୂର୍ବରୁ ମାଲିକ ଓ ଶ୍ରମିକ ମଧ୍ୟରେ ଥିବା ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ଉଭେଇଗଲା । ମାଲିକର ସମ୍ପର୍କ ଅଗଣିତ ଶ୍ରମିକ ଓ ସେମାନଙ୍କ ଉପରେ ନିର୍ଭର କରି ଚଳୁଥିବା ସ୍ତ୍ରୀ ଓ ପିଲାମାନଙ୍କ ସହିତ ରହିଲା ନାହିଁ । ଫଳରେ ଏହି ଅସମାନତା ପୁଞ୍ଜିବାଦୀ ଶ୍ରେଣୀ ଓ ଶ୍ରମିକ ଶ୍ରେଣୀ ସୃଷ୍ଟି କଲା । ଶ୍ରମିକ ଶ୍ରେଣୀ ଏମାନଙ୍କ ଦ୍ୱାରା କେବଳ ଶୋଷିତ ହେଲେ ନୁହେଁ ବରଂ ପ୍ରଭୂତ ଅର୍ଥବଳର କ୍ଷମତାରେ ସେମାନେ ଶ୍ରମିକର ମୂଲ୍ୟକୁ ଯେକୌଣସି ଘାଉବଠାକୁ ମାଧ୍ୟମ କଲେ । ଶ୍ରମିକ ଶ୍ରେଣୀମାନେ ସଂଗଠିତ ହୋଇ ଟ୍ରେଡ଼ ୟୁନିୟନ କଲେ । ବ୍ୟକ୍ତି ମାଲିକାନାରେ ଥିବା ପ୍ରତିଯୋଗିତା କ୍ରମଶଃ ଲୋପ ପାଇଲା । ଫଳତଃ ବଣ୍ଟାକୁଣ୍ଟାରେ ଯେଉଁ ସମାନତା ପରିଲକ୍ଷିତ ହେଉଥିଲା ତା'ର ମଧ୍ୟ ବିଲୋପ ଘଟିଲା । ଅର୍ଥନୈତିକ ଅସମାନତା ନୈତିକ ଅଧଃପତନ ସୃଷ୍ଟି କଲା । ପୁଞ୍ଜିବାଦୀ ଶ୍ରେଣୀ କ୍ରମଶଃ ଧାର୍ମିକ ଅନୁଷ୍ଠାନମାନଙ୍କୁ ଅର୍ଥ ବଳରେ ଦଖଲ କଲେ । ଫଳରେ ଅଧିକାର ଓ ନ୍ୟାୟ ବ୍ୟାହତ ହେଲା । ଧାର୍ମିକ ଅନୁଷ୍ଠାନମାନେ ମଧ୍ୟ ନ୍ୟାୟ ଅଧିକାରକୁ ମର୍ଯ୍ୟାଦା ଦେଲେ ନାହିଁ । ଅର୍ଥନୀତିରେ ଘୋର ବିଶୃଙ୍ଖଳା ଦେଖାଗଲା । ଅସମାନତା ଓ ଅନ୍ୟାୟ ଉପାୟରେ ସମ୍ପତ୍ତି ବଣ୍ଟନ କ୍ରମଶଃ ସମାଜରେ ତାରତମ୍ୟ ସୃଷ୍ଟି କଲା । ଫଳରେ ପ୍ରଥମ କରି ଯେଉଁ 'ବ୍ୟକ୍ତି ସତ୍ତା' ଚିନ୍ତା ପ୍ରକାଶ ପାଇଲା ତା'ର ମୂଳୋତ୍ପାଟନ ହେଲା । ଏହି ସମସ୍ୟାର ସମାଧାନ ପାଇଁ ଖୋଜା ଚାଲିଲା ଉପାୟ । ସମ୍ପତ୍ତିର ଅସମାନ ବିତରଣ ଶ୍ରମିକମାନଙ୍କ ପ୍ରତି ଶୋଷଣ ମନୋବୃତ୍ତି ଏବଂ ଅର୍ଥର ଦାସତ୍ୱରେ ବନ୍ଦୀ ମଣିଷକୁ ଉଦ୍ଧାର କରିବା ପାଇଁ ବିଭିନ୍ନ ରାଷ୍ଟ୍ରମାନେ ବିଜ୍ଞାନ ଓ ସମାଜବାଦକୁ ହିଁ ଗ୍ରହଣ କଲେ । ସମାଜବାଦୀ ଚିନ୍ତାଧାରା ବହୁ ଶୀଘ୍ର ମଣିଷମାନଙ୍କର ଚେତନାକୁ କବଳିତ କଲା । ପୃଥିବୀ ଇତିହାସରେ ଏପରି କୌଣସି ଗୋଟିଏ ଚିନ୍ତାଧାରା ଏତେ ବେଶି ବ୍ୟାପକ ଓ ସର୍ବଜନଗୃହୀତ ହୋଇ ନଥିଲା, ଯେପରି ସମାଜବାଦ ହେଲା । ସ୍ୱାମୀ ବିବେକାନନ୍ଦ ଏହି ସର୍ବାଜନଦୃତ ଚିନ୍ତାଧାରା ପ୍ରତି ସଚେତନ ଥିଲେ ଏବଂ ସେ ଖୁବ୍ ଗୁରୁ ଗମ୍ଭୀର ଭାବେ କହିଲେ, "ଆମ ଦେଶରେ ପ୍ରତ୍ୟେକ ଗୃହକୁ ଦାତବ୍ୟ ପାଗଳଖାନା କରି ଦେଇପାରୁ । ଦେଶସାରା ହସ୍‌ପିଟାଲ ବିଛେଇ ଦେଇପାରୁ, ତଥାପି ଲୋକମାନଙ୍କର ଦାରିଦ୍ର୍ୟ ରହିଥିବ ଯେ ପର୍ଯ୍ୟନ୍ତ ମଣିଷର ଚରିତ୍ରରେ ପରିବର୍ତ୍ତନ ନ ଘଟିଛି ।" ସ୍ୱାମୀଜୀ ଲୋକମାନଙ୍କୁ ଅନ୍ୟ ଉପରେ ନିର୍ଭରଶୀଳ ହେବାକୁ ନିନ୍ଦା କରୁଥିଲେ । ମଣିଷର ଅନ୍ତଃ ମଧ୍ୟରେ ଥିବା ସ୍ୱାଧୀନ ଚିନ୍ତାକୁ ସୁରକ୍ଷା କରିବା ଉପରେ ସେ ଗୁରୁତ୍ୱ ଦେଇଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ପ୍ରତ୍ୟେକ ନିର୍ଦ୍ଧନ ବ୍ୟକ୍ତି ନିଜ ଭିତରେ ଥିବା ଅସୀମ ଶକ୍ତି ବିଷୟରେ ସଚେତନ ହୋଇ ନିଜକୁ ଉପରକୁ

ହଟାଇବାକୁ ଚେଷ୍ଟା କରୁ ଏବଂ ଏହା କରିବା ସମୟରେ ସେ ଧନୀ ବ୍ୟକ୍ତିମାନଙ୍କର ନିନ୍ଦା, କୁତ୍ସାରଟନା ନ କରୁ । ସ୍ୱାମୀଜୀ କହିଥିଲେ, "ପ୍ରତ୍ୟେକ ଲୋକ ନିଜକୁ ସୁରକ୍ଷା କରିବା ଉଚିତ ଏବଂ ପ୍ରତ୍ୟେକ ନିଜର କର୍ତ୍ତବ୍ୟ ସମ୍ପାଦନ କରିବା ବିଧେୟ । ମୁଁ କାହାର ସାହାଯ୍ୟ ଆଶା କରେ ନାହିଁ, କାହାକୁ ମଧ୍ୟ ଫିଙ୍ଗି ଦିଏ ନାହିଁ । ଯେଉଁମାନେ ମୋତେ ସାହାଯ୍ୟ କରୁଛନ୍ତି ବା କରିବେ, ତାହା ସେମାନଙ୍କର ମୋ ପ୍ରତି ଦୟା, ଏହା ମୋର ଅଧିକାର ନୁହେଁ । ତେଣୁ ମୁଁ ଚିରଜୀବନ କୃତଜ୍ଞ ।" ଗରିବମାନଙ୍କ ନିମିତ୍ତ କାର୍ଯ୍ୟକରିବା ପାଇଁ ବସ୍ତୁବାଦୀ ସଭ୍ୟତାର ଆବଶ୍ୟକତା ରହିଛି । ତେଣୁ ଗରିବମାନଙ୍କୁ ସାହାଯ୍ୟ ନାମରେ କୁଣ୍ଢେଇ ବାଣ୍ଟିବା ଅପେକ୍ଷା କାମ ସୃଷ୍ଟି କରି ଯୋଗାଇବା ଉପରେ ସେ ଗୁରୁତ୍ୱ ଦେଇଥିଲେ । ତାଙ୍କର ଦେଶର ଅବହେଳିତ ଓ ଗରିବମାନଙ୍କର ଆତ୍ମ-ସମ୍ମାନ ଓ ପ୍ରତିଷ୍ଠା ଉପରେ ଗଭୀର ବିଶ୍ୱାସ ଥିଲା ।

ତେଣୁ ସ୍ୱାମୀଜୀ ପଚାରିଥିଲେ ଯେଉଁଠାରେ କେହି ସେମାନଙ୍କ ଉପରେ ଦୃଷ୍ଟି ପକାଇ ନାହାନ୍ତି, ଉତ୍ସାହଜନକ ପଦେ କଥା କହୁ ନାହାନ୍ତି, ସମସ୍ତେ ଘୃଣା କରନ୍ତି ସେଭଳି ପରିସ୍ଥିତିରେ ବାସକରି ଆମର ସର୍ବହରା ଶ୍ରେଣୀ ହନଗତ ଅନ୍ୟମାନଙ୍କ ଗୃହରେ ଅସୀମ ଧୈର୍ଯ୍ୟ, ପ୍ରେମ ଓ ସହନଶୀଳତାର ପରିଚୟ ଦେଇଛନ୍ତି । ଟିକିଏ ହେଲେ ଉଁ ଚୁଁ କରୁନାହାନ୍ତି । କୁହତ ଦେଖି, ଏଥିରେ କ'ଣ ଈଶ୍ୱରଙ୍କର ପରିପ୍ରକାଶ ହେଉନାହିଁ ? ତେଣୁ ସେ ବିଶ୍ୱାସ କରୁଥିଲେ ଯଦି ଆମକୁ ଗରିବ, ନିଷ୍ପେସିତ ଓ ପଦଦଳିତମାନଙ୍କର ସେବା କରିବାକୁ ହେବ ତେବେ ସେମାନଙ୍କୁ ଶିକ୍ଷା ଦେବାକୁ ହେବ । ତା' ଫଳରେ ସେମାନେ ସେମାନଙ୍କର ନଷ୍ଟ ହୋଇ ଯାଇଥିବା ବ୍ୟକ୍ତିତ୍ୱର ଉନ୍ନତି କରିପାରିବେ । ଦରିଦ୍ରମାନଙ୍କ ପ୍ରତି ସମ୍ବେଦନଶୀଳତାରେ ତାଙ୍କ ହୃଦୟ ବିଚଳିତ ହୋଇ ଉଠୁଥିଲା । ସମାଜବାଦୀ ଚିନ୍ତାଧାରାର ଅନେକ ଅଂଶ ତାଙ୍କୁ ବେଶ୍ ପ୍ରଭାବିତ କରିପାରିଥିଲା । ତେଣୁ ସେ କହିଥିଲେ, "ମୋ ବିଚାରରେ ସର୍ବସାଧାରଣଙ୍କ ପ୍ରତି ଅବହେଳା ଜାତୀୟ ଅପରାଧ ଏବଂ ତାହା ଅଧଃପତନର ମୁଖ୍ୟ କାରଣ । ସେମାନେ ଆମର ଶିକ୍ଷା ପାଇଁ ଅର୍ଥ ଦିଅନ୍ତି, ମନ୍ଦିର ଗଢ଼ନ୍ତି ମାତ୍ର ତା' ପରିବର୍ତ୍ତରେ ଗୋଇଠା ପାଆନ୍ତି । ଠିକ୍ ଭାବରେ କହିଲେ ସେମାନେ ଆମର କ୍ରୀତଦାସ । ଯଦି ଆମକୁ ଭାରତର ଅଭ୍ୟୁଦୟ ଘଟାଇବାକୁ ହେବ, ତେବେ ସେମାନଙ୍କ ପାଇଁ କାର୍ଯ୍ୟ କରିବାକୁ ହେବ । ମଣିଷ ପାଇଁ ଯେତେ ପ୍ରକାର ଅର୍ଥନୈତିକ ଯୋଜନା କରି ତା'ର ପରିବର୍ତ୍ତନ ପାଇଁ ଚେଷ୍ଟା କଲେ ମଧ୍ୟ ଯଦି ତା'ଭିତରେ ଥିବା ନେତୃତ୍ୱକୁ ପରିପ୍ରକାଶ କରାନଯାଏ, ତେବେ ତାହା ମୂଲ୍ୟହୀନ ହେବ । ତେଣୁ ସେ ତାର ଦେବତ୍ୱକୁ ଜାଣିବା ପାଇଁ, ତାକୁ ସାହାଯ୍ୟ କରିବା ଆବଶ୍ୟକ । ତେଣୁ ସେ କହିଥିଲେ ଭାରତର ଏହି ନିପୀଡ଼ିତ ଜନତା ପ୍ରକୃତରେ କ'ଣ ଜାଣିବାକୁ ଆବଶ୍ୟକ କରେ । ମଣିଷ କେବଳ ଗୋଟିଏ ରକ୍ତ ମାଂସରେ ବାଘଜୀବ ନୁହେଁ । ମଣିଷ ଶରୀର ଭିତରେ ଦେବତ୍ୱ ରହିଛି । ତେଣୁ ସ୍ୱାମୀଜୀ କହିଛନ୍ତି, "ପ୍ରତ୍ୟେକ ସୁସ୍ଥ ସାମାଜିକ ପରିବର୍ତ୍ତନ ଏହି ଆଧ୍ୟାତ୍ମିକ ଶକ୍ତିର ପରିପ୍ରକାଶର ହିଁ ଘଟିଛି ଏବଂ ଏହା ଯଦି ବଳିଷ୍ଠ ହୁଏ ଏବଂ ଠିକ୍ ଭାବରେ ସଜାଡ଼ି ଦିଏ, ସମାଜ ମଧ୍ୟ ନିଜକୁ ଠିକ୍ ଭାବରେ ସଜାଡ଼ି ନେବ ।" ତେଣୁ ଭଲ ଓ ମନ୍ଦ କାର୍ଯ୍ୟ ଭିତରେ ପାର୍ଥକ୍ୟ ସୃଷ୍ଟିକରି ଭଲ କାର୍ଯ୍ୟ କ'ଣ ହେବା ଉଚିତ, ତା' ବିଷୟରେ କହିବାକୁ ଯାଇ ସ୍ୱାମୀଜୀ କହିଛନ୍ତି, "ଯେଉଁ କାର୍ଯ୍ୟ ବ୍ୟକ୍ତିର ଦେବତ୍ୱକୁ ଅଧିକରୁ ଅଧିକ ପରିପ୍ରକାଶ କରାଏ, ତେବେ ତାହା ଉତ୍ତମ ଅଟେ ଏବଂ ପ୍ରତ୍ୟେକ କର୍ମ ଯାହାଦ୍ୱାରା ଦେବତ୍ୱ କ୍ଷୟ କରେ, ତାହା ଘୃଣ୍ୟ । ଏକମାତ୍ର ବାଟ ହେଉଛି ଦେବତ୍ୱର ପରିପ୍ରକାଶ କରିବା । ମଣିଷ ଭିତରେ ଦେବତ୍ୱର ଏହି ପ୍ରକୃତି ହେତୁ ତା'ର କୌଣସି ସଂସ୍କାର ଦରକାର ନୁହେଁ ।" ସ୍ୱାମୀଜୀଙ୍କ ଭାଷାରେ "ମୁଁ କୌଣସି ସଂସ୍କାର ଚାହେଁ ନାହିଁ । ମୋର ଆଦର୍ଶ ହେଉଛି ଜାତୀୟ ପଥରେ ସମାଜର ଉନ୍ନତି, ବିସ୍ତୃତି ଓ ପରିଣତି ।" ଏହି ଅଭିବୃଦ୍ଧିର ଚିନ୍ତାଧାରାର ବୀଜବପନ କରିବାକୁ ସ୍ୱାମୀଜୀ ଚାହିଁଥିଲେ । ମଣିଷକୁ ଏପରି ଭାବରେ ପ୍ରେରଣା ଦେଇ ମଣିଷକୁ ସମ୍ପୂର୍ଣ୍ଣ ପରିବର୍ତ୍ତନ କରିବାର ଅର୍ଥ ହିଁ ଜାଣିବା । ମଣିଷ ମଧ୍ୟରେ ରହିଛି ବାହ୍ୟ ଓ ଅନ୍ତଃ ପ୍ରକୃତି । ଏହି ଅନ୍ତଃ ପ୍ରକୃତିକୁ ଜାଗ୍ରତ କରିବା ପାଇଁ, ମୂଲ୍ୟବୋଧ ଓ ଆତ୍ମ ସମ୍ମାନ ପ୍ରତି ସଚେତନ ହେବା ହିଁ ପ୍ରାଥମିକ ଆବଶ୍ୟକତା । ତେଣୁ ସ୍ୱାମୀଜୀ କହିଥିଲେ, "ପ୍ରତ୍ୟେକ ଆତ୍ମା ଦେବତ୍ୱର ପରିପ୍ରକାଶ । କେହି ଦୁର୍ବଳ ନୁହେଁ । ଆତ୍ମା ଅଜର ଅମର ଓ ଶାଶ୍ୱତ । ଛିଡ଼ା ହୁଅ, ନିଜର ଦାବୀକୁ ଦୃଢ଼ତର କର । ତୁମ ଭିତରେ ଥିବା ଈଶ୍ୱରଙ୍କୁ ଆହ୍ୱାନ କର । ତାଙ୍କୁ ଦୂର କର ନାହିଁ ।" ଚରିତ୍ର ଅର୍ଥରେ ଆମେ କହିଛନ୍ତି ଯେ, କେବଳ ଔଦ୍ୟୋଗିକ ଭାବଧାରାରେ ସର୍ବୀକରଣ ସାମାଜିକ ପ୍ରଶ୍ନମାନଙ୍କର ସମାଧାନର ପନ୍ଥା ନୁହେଁ । ସାମ୍ୟବାଦ ବ୍ୟବସ୍ଥା ସଫଳ ହେବ ଯେତେବେଳେ ପ୍ରତ୍ୟେକ ମଣିଷର ନୈତିକ ଓ ବୁଦ୍ଧିର ପରିପ୍ରକାଶ ଘଟିବ ।

ସ୍ୱାମୀଜୀ କହିଥିଲେ, ପ୍ରଥମେ ଆମମାନଙ୍କୁ ଈଶ୍ୱର ହେବାକୁ ହେବ ଏବଂ ତା'ପରେ ଅନ୍ୟକୁ ଈଶ୍ୱର ହେବାରେ ସାହାଯ୍ୟ କରିବାକୁ ହେବ ।" ଆମେ ବିଶ୍ୱାସ କରୁ ଯେ

ପ୍ରତ୍ୟେକ ମଣିଷ ହିଁ ଈଶ୍ୱର । ଆମେ ଆହୁରି ମଧ୍ୟ ବିଶ୍ୱାସ କରୁ ଯେ ପ୍ରତ୍ୟେକ ଆତ୍ମାର କର୍ତ୍ତବ୍ୟ ହେଉଛି ଅନ୍ୟ ଆତ୍ମା ପ୍ରତି ଚିନ୍ତାରେ, କାର୍ଯ୍ୟରେ ଓ ଭାବନାରେ ସେହି ଈଶ୍ୱର ବୋଲି ଭାବିବା ।" ସ୍ୱାମୀଜୀଙ୍କର ଆତ୍ମା ପ୍ରତି ଏହି ଦୃଷ୍ଟିଭଙ୍ଗୀ ଚିରନ୍ତନ ଏବଂ ଏହାହିଁ ସାମାଜିକ ପରିବର୍ତ୍ତନ ପାଇଁ ତାଙ୍କର ଚିଠା । ସ୍ୱାମୀଜୀଙ୍କ ସାମ୍ୟବାଦର ମୂଳ ଲକ୍ଷ୍ୟ ହେଉଛି ଭଲ ପାଇବା, ସାମାଜିକ ଓ ଜାତୀୟତା କାର୍ଯ୍ୟର ଭିତ୍ତିଭୂମି । ପ୍ରତ୍ୟେକ ସ୍ୱେଚ୍ଛାସେବୀ ଏହା ଉପରେ ଗୁରୁତ୍ୱ ଦେବାକୁ ସେ କହୁଥିଲେ । ସେ କହୁଥିଲେ, "ମୋର ସନ୍ତାନମାନେ ! ଅନୁଭବ କର । ଦରିଦ୍ର, ନିଷ୍ପେଷିତ, ପଦଦଳିତମାନଙ୍କ ପ୍ରତି ଅନୁଭବୀ ହୁଅ । ହୃଦୟ ବନ୍ଦ ହୋଇଯିବା ପର୍ଯ୍ୟନ୍ତ, ମସ୍ତିଷ୍କ ଘୂରିଇବା ପର୍ଯ୍ୟନ୍ତ ଅନୁଭବ କର ଏବଂ ଭାବ ଯେ ସେମାନଙ୍କ କଥା ଭାବି ଭାବି ତୁମେ ପାଗଳ ହୋଇଯିବ ।" ସ୍ୱାମୀଜୀ ଚାହୁଁଥିଲେ ଭାରତୀୟ ସାମାଜିକ ଭିତ୍ତିଭୂମି ଉପରେ ଭାରତର ସାମାଜିକ ଓ ଅର୍ଥନୈତିକ ପୁନର୍ଗଠନ ହେଉ । ସେ ବିଶ୍ୱାସ କରୁଥିଲେ ଯେ ପୁରାତନ ଢାଞ୍ଚା ମଧ୍ୟରେ ଲୋକମାନଙ୍କର ଜୀବନକୁ ପୁନର୍ଗଠନ କରାଯାଇ ପାରିବ । ସେ ଅତ୍ୟନ୍ତ ଦୃଢ଼ ବିଶ୍ୱାସର ସହିତ କହିଥିଲେ, "ଫେରିଯାଅ, ଅତୀତ ଦିନକୁ ଫେରିଯାଅ । ଫେରିଯାଅ, ଯେତେବେଳେ ଥିଲା ଶୌର୍ଯ୍ୟ ଓ ବୀର୍ଯ୍ୟ । ସମାଜକୁ ପରିବର୍ତ୍ତନ କରିବାକୁ ଚେଷ୍ଟା କର । ସମସ୍ତଙ୍କୁ ସମାନ ଭାବରେ ଦେଖିବାକୁ ଚେଷ୍ଟା କର । ତେଣୁ ସେ ଚାହୁଁଥିଲେ, "ବିଲୋପ ନୁହେଁ, ବର୍ତ୍ତମାନ ଥିବା ବ୍ୟବସ୍ଥାର ସରଳୀକରଣ, ଧ୍ୱଂସ ନୁହେଁ କିନ୍ତୁ ସୃଜନ ଓ ପୁଷ୍ଟୀକରଣ ଏବଂ ବିପ୍ଳବ ନୁହେଁ ପରିବର୍ତ୍ତନ । ତେଣୁ ସେ କହୁଥିଲେ, "ମୁଁ ଭାରତର ବୁଦ୍ଧିଜୀବୀମାନଙ୍କ ସହିତ ଏକମତ ଯେ ସମାଜର ଆମୂଳଚୂଳ ପରିବର୍ତ୍ତନ ଆବଶ୍ୟକ । ମାତ୍ର ଏହା କପରି ସମ୍ଭବ ? ପରିବର୍ତ୍ତନ ଧ୍ୱଂସ ମାଧ୍ୟମରେ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ମୋର ଯୋଜନା ସମାଜକୁ ଉଚ୍ଚରୁ ଉଚ୍ଚତର, ଶ୍ରେଷ୍ଠରୁ ଶ୍ରେଷ୍ଠତର ଆଡ଼କୁ ଆଗେଇ ନେବାକୁ ହେବ ।" ସଂସ୍କାରକମାନଙ୍କୁ ଆହ୍ୱାନ ଦେଇ କହିଛନ୍ତି, "ତୁମକୁ ସାଧାରଣ ଜନତାର କାର୍ଯ୍ୟ ଦାୟୀ ଦେବାକୁ ହେବ । ତେଣୁ ତାଙ୍କର ବାର୍ତ୍ତାଥିଲା, ଦେଶର ଜନସାଧାରଣଙ୍କୁ ଅବହେଳା କରିବା ଆମର ପ୍ରବଳ ଜାତୀୟ ପାପ ଏବଂ ଏହାହିଁ ଆମ ଅବନତିର ଅନ୍ୟତମ କାରଣ । ଯେ ପର୍ଯ୍ୟନ୍ତ ଭାରତର ସର୍ବସାଧାରଣ ଭଲ ଭାବରେ ଶିକ୍ଷିତ ନ ହୋଇଛନ୍ତି, ଭଲ ଭାବରେ ଖାଇବାକୁ ନ ପାଇଛନ୍ତି, ଅଭିଜାତ ଲୋକମାନେ ଯେ ପର୍ଯ୍ୟନ୍ତ ସେମାନଙ୍କର ଯତ୍ନ ନ ନେଇଛନ୍ତି, ସେ ପର୍ଯ୍ୟନ୍ତ ଯେତେ ରାଜନୈତିକ ଆନ୍ଦୋଳନ କରାହେଉନା କାହିଁକି, କୌଣସି ମତେ କିଛି ହେବ ନାହିଁ । ଯଦି ଭାରତର ପୁନରୁଦ୍ଧାର ଚାହିଁ, ତେବେ ଆମ୍ଭମାନଙ୍କୁ ସେମାନଙ୍କର ଉନ୍ନତି ନିମିତ୍ତ ଭାବରେ କାମ କରିବାକୁ ହେବ ।" ତେଣୁ ସେ ଗୁରୁତ୍ୱ ଦେଇଥିଲେ, "ପ୍ରତ୍ୟେକ ସ୍ତ୍ରୀ, ପୁରୁଷ ନିର୍ବିଶେଷରେ ଈଶ୍ୱର ଭାବି ଦେଖ । ତୁମେ କାହାକୁ ସାହାଯ୍ୟ କରିପାରିବ ନାହିଁ । କେବଳ ସେବା କରିପାରିବ । ମୁଁ ଈଶ୍ୱରଙ୍କୁ ଦରିଦ୍ର ଭିତରେ ଦେଖିବି ଏବଂ ମୋର ମୁକ୍ତି ନିମିତ୍ତ ମୁଁ ସେମାନଙ୍କ ନିକଟକୁ ଯିବି ଏବଂ ଉପାସନା କରିବି । ଦରିଦ୍ର, ନିପୀଡ଼ିତର ସେବା ହିଁ ମୋର ମୁକ୍ତିର ବାଟ । ଲୋକମାନଙ୍କର ସେବା ମାଧ୍ୟମରେ ଈଶ୍ୱରଙ୍କର ଉପାସନା କରିବା କ'ଣ ମହାନ୍ ସୁଯୋଗ ନୁହେଁ ।"

ଯଦି ସଂସ୍କାରକ, ସମାଜସେବୀ, ରାଜନୈତିକ ନେତୃମଣ୍ଡଳୀ ଏହିପରି ଭାବନା ପୋଷଣ କରନ୍ତି, ତେବେ ସମାଜରେ ଯେଉଁ ବ୍ୟବସ୍ଥା ଦେଖାଦେବ, ସେଥିରେ ସାମ୍ୟ ସୌହାର୍ଦ୍ଦ୍ୟ ବୃଦ୍ଧି ପାଇବ । ସାଂପ୍ରତିକ ସମୟରେ ଦେଖା ଦେଇଥିବା ବିଶୃଙ୍ଖଳାକୁ ଆଧ୍ୟାତ୍ମିକ ସମାଜବାଦ ଦ୍ୱାରା ଦୂର କରିପାରିବ ।



# ପତାକା ଓହ୍ଲାଅ ନାହିଁ

* ସଚ୍ଚିଦାନନ୍ଦ ରାଉତରାୟ

ପତାକା ଓହ୍ଲାଅ ନାହିଁ,
ଏ ପତାକା ନୁହେଁ ସାଲୁକନା,
କୋଟି କୋଟି ମଣିଷର ରକ୍ତେ ତାହା ଲାଲ,
ଭୋକିଲା, ଦୁଃଖୀ, ଶୋଷିତର ଆଶାର ମଶାଲ
ସେ ମୁକ୍ତିର ବାନା,
ପୃଥିବୀର ଭାରସାମ୍ୟ,
ସାମ୍ୟର ବୈରଖ, ପତାକା
ଶତାବ୍ଦୀର ଶେଷ ସାଲିଆନା ।
ମେହନତି ମଣିଷର ଝଣ୍ଡା
ଅଦ୍ଭୁତ ଚଗଲ ।।
ଏ ପତାକା ସକାଳର ।
ଢକାଅନା ତାକୁ ମୋ' ଲୁହରେ
ଚନ୍ଦନ ଗନ୍ଧରେ ।
ମୁଁ ନୁହେଁ କାହାର ଲୋକ,
ନୁହେଁ କେଉଁ ଦଳର ଗ୍ରାହକ ।
ମୁଁ ଏକ ସାଦାସିଧା ନିରୋଳା ମଣିଷ
(ବରଂ ଝଗଡା କରେ ଏକଛତ୍ର ସଙ୍ଗେ)
ତଥାପି ମୁଁ ମଣେ ଅସହାୟ,
ବଡ ଏକୁଟିଆ ସାରାଟା ସଂସାରେ ।
ଅନେକ ନାଙ୍ଗ-ସେନା ଓଲଟି ଯାହାରେ
ହାରଗିଲା ଦହି,
ଦର୍ଶନ ପର୍ଦ୍ଦିର ହାତ ଛୁଇଁବାକୁ ଖୁଂଟି
ଯାତ ଦନେ ପାଗନ ଭରସି
ତାକୁ ତମେ ବନ୍ଧାଅନା ଲୋଟାଅନା ତଳେ···
ଦାଣ୍ଡେ ବା ବଜାରେ ।
ଏ ପତାକା ଲେନିନ୍‌ର
ଏ ପତାକା ମ୍ୟାକ୍ସିମ୍ ଗର୍କିର
ଗଙ୍ଗାଠୁ ଭଲ୍‌ଗା ଯାଏ
ସାରା ସଂସାରର ଏହା ଇତିହାସ ।

ଏହା ସାରା ମଣିଷ ଜାତିର ଦିବ୍ୟ ଉଆରଧ ।
ତା ଲାଞ୍ଛନା ଦାଆ ଓ ହାତୁଡ଼ି
ଗାଇଅଛି 'ପୃଥିବୀର ସର୍ବହରା
ହରାଇବ କେବଳ ଶିକୁଳି ।।'
ଉଠା ପଡା ଗଣ ସଂଗ୍ରାମରେ
ଏ ପତାକା ମୋ' ହାତରୁ ନେଇଛି ସଲାମ,
ଦେଇଛି ସଲାମ ତାହା ଅଗଣିତ
ଲାଲ୍ ଫଉଜର, ବିଶ୍ୱ ସାରା,
ଲାଲ୍ ନଭେମ୍ବରେ ।
କହିଥିଲି ଝିଅକୁ ମୁଁ 'ମା'ଲୋ
ବରନେବ ସେହି ଜନେ ବକ୍ଷେ ଯା'ର ଅଙ୍କା ଧ୍ୱଜା ଲାଲ,
ତୋ'ର ପାଣିପ୍ରାର୍ଥୀ ହୋଇ ଆସିବେ ଯେଦିନ
ଯମ, ଅଗ୍ନି, ବରୁଣ ସମେତ
ବ୍ରହ୍ମା ଓ କୁବେର,
ବାଛିନେବ କେ ତୋହର ନଳ ।'
ସେ ପତାକା କଭା ହୁଏ ନାହିଁ ।
ତାର ଜନ୍ମ ଚିରକାଳ ଉଡ଼ିବାର ପାଇଁ
ଉଦୟେ ହୃଦୟେ, ଅସ୍ତ ଓ ଉଦୟେ
ଆଜି କାଲି ସବୁଦିନ ପାଇଁ ।।
ପତାକା ଓହ୍ଲାଅ ନାହିଁ, କାହିଁକି ଓହ୍ଲାଅ ?
ମୁଁ ଦିଏଁ ଆଦେଶ—
ଛାଡ଼ିଦିଅ, ତାକୁ ଛାଡ଼ିଦିଅ, ଉଡ଼ିବାକୁ ଦିଅ
ଉଦାର ଆକାଶେ ।
ସେ ପତାକା ଆକାଶର ।
ଉଡ଼ୁଥାଉ ଫର ଫର ଚିର ଅବକ୍ଷୟ ।
ସେ ପତାକା ଅମର ଅକ୍ଷୟ ।।

ମିସନରୋଡ଼, କଟକ-୧
୨୮-୧୨-୯୧
(୫-୧-୯୨; ସମାଜ ସୌଜନ୍ୟରୁ)

# ଆହ୍ୱାନ

ଇନ୍‌କଲାବ୍ ଜିନ୍ଦାବାଦ
ସଂଗ୍ରାମୀ ସଂଗଠନ ଜିନ୍ଦାବାଦ । ୦ ।

ଯନ୍ତ୍ରଣା ଜଠରର ତୋର ହେଲୁ ତୁହି ଜନମ
ତେଣୁ ତୋର ଅନ୍ୟନାମ ସଂଗ୍ରାମୀ ସଂଗଠନ ।
ଏ ମାଟିର ଉଷ୍ମତାରେ ଗ୍ରହି କଲୁ ଶପଥ,

ତେଣୁ ତୋର ବୁକୁଆଜି ଇସ୍ପାତ ଠୁଁ ଶକ୍ତ । ୧ ।
ଏ ସମାଜ ଯନ୍ତ୍ରଣାରେ ଜଳିଲା ତୋ ଜୀବନ,
ତେଣୁ ଜ୍ୱଳନର ଶିଖା ନେଇ ଡାକୁ ସଂଗ୍ରାମ ।
ମର୍ମେ ମର୍ମେ ଶିକ୍ଷାଦେଲା ସଂଗ୍ରାମର ମୈଦାନ

ବିକାଶର ଯାତ୍ରାପଥେ ଯାତ୍ରୀ ତୋର ନିଶାଣ । ୨ ।
ଅଂଧକାର ବକ୍ଷଚିରି ଉଇଁଲୁ ତୁ ଅରୁଣ,
ତେଣୁ ସୂର୍ଯ୍ୟସମ ତେଜ, ଉଡ଼େ ତୋର ନିଶାଣ ।
ଘାତ ପ୍ରତିଘାତ ନେଇ ଗଢ଼ା ତୋର ଜୀବନ,

ତେଣୁ ରକ୍ତେ ଶିରା ପ୍ରଶିରାରେ ଭରା ଯୌବନ । ୩ ।
ବିପ୍ଳବରୁ ଜନ୍ମ ଯାର ଜୀବନ ତା ବିକାଶ,
ମୃତ୍ୟୁ ତାର ନାହିଁରେ ନାହିଁ ନାହିଁ ତାର ବିନାଶ ।
ସଂଗ୍ରାମୀ ତ ମରେ ନାହିଁ ସଂଗ୍ରାମ ତ ସରେନା,
ବିକାଶର ଯାତ୍ରାପଥ ଯାତ୍ରୀ କେବେ ଭୁଲେନା । ୪ ।

ନାନାଜାତି ନାନାଭାଷା ଧର୍ମୀ ଧର୍ମ ବିଭେଦ,
ସ୍ପର୍ଶ କରିପାରିବନି ଦୁର୍ଗ ତୋର ଅଭେଦ ।
ଦଳିତ, ପତିତ, ନିଷ୍ପେଷିତ ତାଜା ରକ୍ତରେ
ଧୂଆଁ ହେଲା ଏଇମାଟି ଧର୍ମବାଦୀ ରକ୍ତରେ । ୫ ।

ଉଗ୍ରବାଦୀ ଘାତକର ଯୁଦ୍ଧବାଦ କଷଣ,
ଜନ୍ମନେଲା ଏ ମାଟିରେ ରଖିବାକୁ ଶୋଷଣ ।
ସେଇ ଶୋଷଣ ବିରୁଦ୍ଧେ ଆଜି ତୋର ସଂଗ୍ରାମ,
ତେଣୁ ବଜ୍ରକଣ୍ଠେ ଗାଉ ଶାନ୍ତି-ମୁକ୍ତି-ସଂଗ୍ରାମ । ୬ ।

# ଆବର୍ତ୍ତନ

ଆହ୍ଵା ନନ୍ଦ ମହାନ୍ତ

ଶିଳ୍ପ ନଗରୀଟିରେ ମୁଁ ବୁଲୁଥିଲି । ବିରାଟ ଲୁହା କାରଖାନା ଚାଲୁଥିଲା । କିନ୍ତୁ ଗୋଟିଏ ହେଲେ ଶ୍ରମିକ ସେଠାରେ କାମ କରୁନଥିଲେ । କେବଳ ଦୁଇଚାରିଟା ଗୋରା ଲୋକ ତାପ ନିୟନ୍ତ୍ରିତ କାଚ କୋଠରୀଟିରେ ବସି ସୁଇଚ୍ ଟିପୁଥିଲେ । କାରଖାନାର ଗୋଟିଏ ପଟେ ବିଭିନ୍ନ ପ୍ରକାରର ଲୁହାଖଣ୍ଡ ବାହାରି ଯାଇ ଆପେ ଆପେ ଟ୍ରେନ୍ ଡବାରେ ଗଦା ହେଉଥିଲା । ଡବାଟି ପୂରଣ ହେଲା ମାତ୍ରକେ ଡବାଟି ଆଗକୁ ଗଡ଼ି ଯାଉଥିଲା, ସେହି ସ୍ଥାନରେ ଆଉ ଗୋଟିଏ ଡବା ଆସି ଠିଆ ହେଉଥିଲା । ଏହିପରି ବିଭିନ୍ନ ପ୍ରକାରର ଓ ଆକାରର ଲୁହା ଡବାଗୁଡ଼ିକରେ ଲଦା ହେବାରେ ଲାଗିଥିଲା । ସମ୍ପୂର୍ଣ୍ଣ ଡବାଗୁଡ଼ିକ ଆପେ ଆପେ ଇଞ୍ଜିନ୍‌ରେ ଲାଗୁଥିଲା । ଡବାଗୁଡ଼ିକ ଖଞ୍ଜା ହେଲା ପରେ ଟ୍ରେନ୍‌ଟି ଦ୍ରୁତ ଗତିରେ ଗଡ଼ି ଯାଉଥିଲା ନିକଟସ୍ଥ ବନ୍ଦରକୁ । ଅତି ଆଶ୍ଚର୍ଯ୍ୟ ! ଇଞ୍ଜିନ୍‌ରେ ଗୋଟିଏ ହେଲେ ବି ଚାଳକ ନଥିଲେ । ମୁଁ କାରଖାନାର କଡ଼େ କଡ଼େ ଆଗେଇ ବାରେ ଲାଗିଲି । କଞ୍ଚା ଲୌହ ପଥର କୋଇଲା; ମାଙ୍ଗାନିଜ ପଥର, ଚୂନ ପଥର ଇତ୍ୟାଦି ବୋଝେଇ ଟ୍ରେନ୍‌ଗୁଡ଼ିକ ଆସି କାରଖାନା ନିକଟସ୍ଥ ବିଭିନ୍ନ ସ୍ଥାନରେ ସେଗୁଡ଼ିକ ଗଦାକରିବାରେ ଲାଗିଥିଲେ । ସେଥିରେ ବି ଗୋଟିଏ ହେଲେ ଚାଳକ ନଥିଲେ କିମ୍ବା ମାଲ୍ ଖଲାସ କରିବାକୁ ଗୋଟିଏ ହେଲେ ଶ୍ରମିକ ନଥିଲେ । ଏହି ସମସ୍ତ କାର୍ଯ୍ୟ ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଥିଲି । ମନ ମଧ୍ୟରେ ଅନେକ ପ୍ରଶ୍ନ ଆସୁଥିଲା । ପଚାରି ବୁଝିବା ପାଇଁ ସେଠାରେ କୌଣସି ଲୋକ ନଥିଲେ ।

ମୁଁ କାରଖାନା ପରିସରରୁ କର୍ମଚାରୀଙ୍କ ରହୁଥିବା ବାସ ସ୍ଥଳୀ ଆଡ଼କୁ ଅଗ୍ରସର ହେଲି । ସେମାନଙ୍କ କ୍ୱାର୍ଟରରେ ଅନେକ ଦିନ ହେବ ଚୂନ ଲାଗିନଥିଲା, କେତେକ କ୍ୱାର୍ଟରରୁ ପଲସ୍ତରା ଖସି ପଡ଼ୁଥିଲା । କ୍ୱାର୍ଟର ଛାତ ଫାଟମାନଙ୍କରେ ବରଗଛ, ଓସ୍ତଗଛ ଇତ୍ୟାଦି କାୟା ବିସ୍ତାର କରି ଆକାଶ ଆଡ଼କୁ ବଢ଼ିବାରେ ଲାଗି ପଡ଼ିଥିଲେ । କ୍ୱାର୍ଟରଗୁଡ଼ିକରେ ଲନ୍ ବୁଦ୍ ବୁଦ୍‌କିଆ ବଣରେ ପରିପୂର୍ଣ୍ଣ ହୋଇଥିଲା । ସେହି ବୁଦ୍ ବୁଦ୍‌କିଆ ବଣ ମଧ୍ୟରେ ଉଲଗ୍ନ ନରନାରୀମାନେ ଠିଆ ହୋଇ ଥିଲେ । ସେମାନଙ୍କ ପାଟିରେ ଭାଷା ନଥିଲା, ଚକ୍ଷୁଗୁଡ଼ିକ କୋରଡ଼ଗତ, ଶରୀରଗୁଡ଼ିକ ତେଜହୀନ କଙ୍କାଳରେ ପାଲଟି ଯାଇଥିଲା । ସେମାନଙ୍କ କାର୍ ଓ ସ୍କୁଟର-ଗୁଡ଼ିକ ଲନ୍‌ରେ ପଡ଼ି ପଡ଼ି କଳଙ୍କି ଲାଗିଯାଇଥିଲା । ସେଗୁଡ଼ିକ ଉପରେ ବଣୁଆ ଲଟାଗୁଡ଼ାଏ ମାଡ଼ିଯାଇଥିଲା । କିଛି ବାଟ ଗଲା ପରେ ମୁଁ ଗୋଟିଏ ସ୍ତ୍ରୀ ଲୋକଙ୍କୁ ଦେଖିଲି । ମୁଣ୍ଡରେ ବହୁ ଦିନ ଧରି ତେଲ ନଲଗି କେଶଗୁଡ଼ିକ ଜଟ ପାଲଟି ଯାଇଥିଲା । ସେ ସମ୍ପୂର୍ଣ୍ଣ ଥିଲେ ଉଲଗ୍ନ । ତାଙ୍କ ଉର କଟି ସ୍ଥାନରେ କେତୋଟି ପଞ୍ଜରା ହାଡ଼ ଗଣି ହୋଇ ଯାଉଥିଲା । ମୋତେ ଦେଖି ସେ ମୁହଁକୁ ତଳ କରି ଠିଆ ହୋଇଗଲେ । ତାଙ୍କୁ ଭଲ କରି ଦେଖିଲି, ଚିହ୍ନିଲା ଚିହ୍ନିଲା ପରି ଲାଗୁଥିଲା । ମୋ ସ୍ମୃତି ମସ୍ତକ୍ ଦୋହଲାଇ ଦେଲି । ମୋ ମାନସ ପଟରେ ସେହି କଙ୍କାଳ ଉପରେ ଏକ ରୂପ ଆଙ୍କି ଦେଲି ସେ ଥିଲେ ଗଙ୍ଗୋତ୍ରୀ । ମୋ ମାନ ଭଉଣୀର ସହପାଠିନୀ । ସେ ଥିଲେ ରୂପ ଲାବଣ୍ୟର ଏକ ପ୍ରତୀକ । ବାପ ମା ବହୁ ଜାକ ଯୌତୁକ ସହ ସେହି ଲୌହ କାରଖାନାର ଏକ ଉଚ୍ଚ ପଦସ୍ଥ ଅଫିସରଙ୍କ ସଙ୍ଗେ ବିବାହ କରିଥିଲେ । ଧନ ସମ୍ପଦରେ ତାଙ୍କର ଅଭାବ ନଥିଲା । ବେଶଭୂଷା ହୋଇ କାର୍‌ରେ ବୁଲୁଥିଲେ । ଘରେ କାମ କରିବା ପାଇଁ ଦଶ ବାରଟା ଚାକର ଥିଲେ । ତାଙ୍କର ଏପରି ଅବସ୍ଥା କାହିଁକି ? ନା, ନା ସେ କଦାପି ଗଙ୍ଗୋତ୍ରୀ ହୋଇନପାରନ୍ତି । "ତୁମେ ଗଙ୍ଗୋତ୍ରୀ ନା ? ମୋ ମନରୁ ସନ୍ଦେହ ଦୂର କରିବା ପାଇଁ ତାଙ୍କୁ ପଚାରି ଦେଲି ।

ସେ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

"ତୁମର ଏପରି ଅବସ୍ଥା କାହିଁକି ?" ସେ କିଛି ନକହି ଭୂଇଁରେ ପଡ଼ିଥିବା ଖଣ୍ଡେ ପାଉଁରୁଟିକୁ ଉଠାଇନେଇ ପୁଳାଏ କାମୁଡ଼ି ଖାଇ ପକାଇଲେ । ଘର ଆଗ ଫାଟିଆ ସିମେଣ୍ଟ କୁଣ୍ଡରେ ପଶୁଙ୍କ ପରି ମୁହଁ ଲଗାଇ ପେଟେ ପାଣି ପିଇଗଲେ ।

ପୁଣି ମୁଁ ପଚାରିଲି, "ଏପରି ଅବସ୍ଥା କାହିଁକି ?"

ସ୍ୱାଧୀନ ବ୍ୟବସାୟର ଫଳ ଆମେ ଭୋଗ କରୁଛୁ ।" ଅନ୍ତକ୍ଷୀଣ କଣ୍ଠରେ ସେ ଉତ୍ତର ଦେଲେ ।

"ତୁମ ପୁଅଝିଅ ଦୁଇଟି କ'ଣ କରୁଛନ୍ତି ?"

"ସେମାନଙ୍କର ଅନାହାର ମୃତ୍ୟୁ ପୂର୍ବରୁ ଦୁଇଟିକୁ ମାରି ଆମେ ଖାଇ ଦେଲୁ । ସେଥିପାଇଁ କିଛି ଦିନ ବଞ୍ଚି ଯାଇଛୁ ।"

"ତୁମ ସ୍ୱାମୀ ?"

"ସେ ଅନେକ ଦିନ ହେବ ମୋତେ ଛାଡ଼ି ଚାଲିଗଲେ । କୁଆଡ଼େ ଗଲେ ମୁଁ ଜାଣେନା ।"

"ବର୍ତ୍ତମାନ ଚଳୁଛ କିପରି ?"

"ମିସ୍ ନାରୀମାନଙ୍କ ଦୟାରେ । ଦିନରେ ଦୁଇଖଣ୍ଡ ପାଉରୁଟି, କୁଣ୍ଡରେ ପାଣି ସେମାନଙ୍କ ଦୟାରୁ ପାଉଛୁ ।" ତାଙ୍କ କ୍ଷୀଣ ସ୍ୱରରେ ସ୍ପଷ୍ଟତା ଥିଲା ।

ତାଙ୍କୁ ଅଧିକ ସମୟ କିଛି ପଚାରି ପାରି ନଥିଲି । ମନ ମଧ୍ୟରେ ଦୁଃଖରେ ବେଦନା ଗୁଡ଼ାଏ ଲଦି ମୁଁ ଆଗେଇ ଚାଲିଲି । କିଛିବାଟ ଆଗେଇବା ପରେ ମୁଁ ଗୋଟିଏ ଛକରେ ପହଞ୍ଚିଲି । କିଛି ବର୍ଷ ପୂର୍ବେ ସେହି ଛକଟି ଥିଲା ସବୁଠାରୁ ଜନ ଗହଳି । ସେଇଟା ଏକ ଜନଶୂନ୍ୟ ଶ୍ମଶାନରେ ପରିଣତ ହୋଇଥିଲା । ଟ୍ରାଫିକ୍ ଷ୍ଟାଣ୍ଡରେ ପୋଲିସ୍ ନଥିଲା, ଗାଡ଼ିର ଘୋର୍ ଶବ୍ଦ ବି ନଥିଲା । ଛକରେ ଠିଆ ହୋଇ ମୁଁ ଚାରି ଆଡ଼କୁ ଅନାଇଲି । କିଛି ଦୂରରେ କୋଠାଘରେ ଗୋଟିଏ ତିନିରଙ୍ଗା ପତକା ଉଡୁଥିଲା । ପତାକାଟିର ରଙ୍ଗ ଧୋଇ ଆସିଥିଲା । ବହୁଦିନ ଧରି ପତାକାଟିକୁ କେହି ବଦଳାଇ ନଥିଲା ପରି ଦିଶୁଥିଲା । ବହୁ ଦୂରରେ ଗୋଟିଏ ଭଙ୍ଗା କୋଠାରେ ଏକ ଲାଲ ପତାକା ଉଡ଼ୁଥିଲା । ବର୍ଷା କାକର ଖାଇ ସେ ପତାକାଟି ବର୍ଣ୍ଣ ମଧ୍ୟ ମଳିନ ପଡ଼ି ଯାଇଥିଲା । କିନ୍ତୁ ମଝିରେ ଥିବା ଦା'ହାତୁଡ଼ି ଚିହ୍ନଟି ସ୍ପଷ୍ଟ ବାରି ହୋଇ ପଡୁଥିଲା । ମୁଁ ପୁଣି ପଶ୍ଚିମ ଦିଗକୁ ଅନାଇଲି । ସେତେବେଳେ ସୂର୍ଯ୍ୟ ଅସ୍ତ ହୋଇ ଯାଇଥିଲେ, ପଶ୍ଚିମାକାଶଟି ନାଲି ବର୍ଣ୍ଣ ଧାରଣ କରିଥିଲା । ଏତିକି ବେଳେ ଛାୟା ଭିତରୁ ଗୋଟିଏ କଙ୍କାଳ ମୋ ଆଡ଼କୁ ଧୀରେ ଧୀରେ ଅଗ୍ରସର ହେଉଥିଲା ମୁଁ ଉତ୍କଣ୍ଠାର ସହ ତା' ଆଗମନକୁ ଅପେକ୍ଷା କରି ରହିଲି । ନିକଟରେ ପହଞ୍ଚି ସେ ମୋତେ ନମସ୍କାର ଜଣାଇଲା । ମୁଁ ତାକୁ ବଲ ବଲ କରି ଅନାଇ ରହିଲି । କ୍ଷୀଣ କଣ୍ଠରେ ସେ ମୋତେ କହିଲା, "ବାବୁଭାଇ, ମୋତେ ଚିହ୍ନି ପାରୁନ ?"

ଆଶ୍ଚର୍ଯ୍ୟ ହୋଇ କଙ୍କାଳଟିକୁ ମୁଁ ଅନାଇ ରହିଲି । ମୋର ଡାକ ନାମ ଧରି ଡାକୁଛି, ପୁଣି ମୋତେ ଭାଇ ସମ୍ବୋଧନ କରୁଛି ! ଯେତେ ଚେଷ୍ଟା କଲେ ବି ତା'ର ପୂର୍ବ ରୂପ ମୋ ମାନସ ପଟରେ ଫୁଟି ଉଠୁ ନଥିଲା । ମୁଁ ତାକୁ କ୍ଷମା ମାଗି ଚିହ୍ନିବାରେ ଅକ୍ଷମ ବୋଲି ସ୍ପଷ୍ଟ ଭାବରେ ଘୋଷଣା କଲି । ସେ କାନ୍ଦିବାକୁ ଚେଷ୍ଟା କରୁଥିଲା, କିନ୍ତୁ ତା ଆଖିରେ ଲୁହ ବହୁ ଦିନରୁ ଶୁଖି ଯାଇଥିଲା । ତା' ମୁଖ ମଣ୍ଡଳୀର ବିକୃତ ଭାବରୁ ସେ କାନ୍ଦୁଛି ବୋଲି ଜଣା ପଡ଼ୁଥିଲା । ଅତି ଧୀର ସ୍ୱରରେ ସେ ମୋତେ କହିଲା, "ମୁଁ ପରା ତୁମ ଗ୍ରାମର ହମିଦ୍ ମିଆଁ ।"

ତା' କଥା ଶୁଣି ମୁଁ ଚମକି ପଡ଼ିଲି । ଆଶ୍ଚର୍ଯ୍ୟରେ ସେହି କଙ୍କାଳଟିକୁ ମୁଁ ଅନାଇ ରହିଲି । ମୋ' ଶରୀରରେ ଦୁଃଖର ଏକ ବିଦ୍ୟୁତ୍ ପ୍ରବାହ ଖେଳି ଗଲା । ମୁଁ ଓ ହମିଦ୍ ଗୋଟିଏ ସ୍କୁଲର ଛାତ୍ର ଥିଲୁ । ସେ ମୋଠାରୁ ଦୁଇଟି ଶ୍ରେଣୀ ତଳେ ପଢ଼ୁଥିଲା । ମୋ'ଠାରୁ ଅଳ୍ପ କିଛି ବର୍ଷ ସାନ ହେଲେ ମଧ୍ୟ ଆମେ ସାଙ୍ଗ ହୋଇ ଖେଳୁଥିଲୁ । ଅନେକ ଥର ଇଦ୍‌ରେ ଅଧିକାର ମୁଁ ତାଙ୍କ ଘରେ ମଧ୍ୟ ହାଲୁଆ, ଲଚ୍ଛା ଖାଇଛି । ଆମେ ଦୁଇ ସମ୍ପ୍ରଦାୟର ହୋଇଥିଲେ ମଧ୍ୟ ଆମ ମଧ୍ୟରେ କୌଣସି ଭେଦ ଭାବ ନଥିଲା । ମୋର ତାଙ୍କ ଘରେ ପୁଅ ପରି ସମସ୍ତ ଅଧିକାର ଥିଲା । ତା'ର ବି ଆମ ଘରେ ସେହି ପରି ଚଳାଚଳନ । ମାଟ୍ରିକ୍ ପରେ ଉଚ୍ଚଶିକ୍ଷା ପାଇଁ ମୁଁ କଲେଜରେ ପଢ଼ିଲି । ପାରିବାରିକ ଆର୍ଥିକ ଦୁରବସ୍ଥା ପାଇଁ ସେ ମାଟ୍ରିକ୍ ପରେ ପରେ ଆଇ ଟି ଆଇରେ ଟ୍ରେନିଂ ନେଇ ଏଠି ଲୌହ କମ୍ପାନୀରେ ମେକାନିକ୍ ରୂପେ ଯୋଗ ଦେଇଥିଲା । ତା'ର କାର୍ଯ୍ୟ ଦକ୍ଷତା ପାଇଁ ଅଳ୍ପ କେତଟା ବର୍ଷ ମଧ୍ୟରେ ସେ ମୁଖ୍ୟ ମେକାନିକ୍ ପଦକୁ ଉନ୍ନୀତ ହୋଇଥିଲା । ତା'ର ଆର୍ଥିକ ଦୁରବସ୍ଥା ସମ୍ପୂର୍ଣ୍ଣ ବଦଳି ଯାଇଥିଲା । ଗାଁରେ ପୁରୁଣା ଘରଟିକୁ ଭାଙ୍ଗି କୋଠାଟାଏ କରିଥିଲା । କିଛି ଚାଷ ଜମି କିଣିଥିଲା । ବିବାହ ହୋଇ ପିଲାଛୁଆଙ୍କ ସହ ଅତି ଆନନ୍ଦରେ ଜୀବନ ଅତିବାହିତ କରୁଥିଲା । କିନ୍ତୁ ଆଜି ? ସେ ସମ୍ପୂର୍ଣ୍ଣ କାଙ୍ଗାଳ ଓ କଙ୍କାଳ ପାଲଟି ଯାଇଛି । ଏପରିକି ଲଜ୍ଜା ନିବାରଣ ପାଇଁ ଦେହରେ ଖଣ୍ଡେ ଲୁଗା ନାହିଁ । ନିଜର ଆବେଗକୁ ଚପାଇ ନପାରି ମୁଁ ପ୍ରଶ୍ନ କଲି, "ତୁମ୍ଭମାନଙ୍କର ଅବସ୍ଥା ଏପରି କାହିଁକି ହେଲା ?" ଉତ୍ତର ଦେବାକୁ ଯାଇ ସେ ହାତଟିକୁ ଆକାଶକୁ ବଢ଼ାଇ ଦେଲା ।

ମୁଁ ଆକାଶକୁ ଅନାଇଲି ସଞ୍ଜ ଘନେଇ ଆସିଥିଲା । ନୀଳ ଆକାଶରେ କେତେ ଗୁଡ଼ିଏ ତାରା ଥିଲା । କିନ୍ତୁ ମୁଁ ନବୁଝିଲି ପରି ତାକୁ ଅନାଇଲି । ସେ ନିରୁତ୍ତର ଥିଲା । ତଥାପି ତାକୁ ପଚାରିଲି, "ଏ କାରଖାନାର ମାଲିକ କିଏ ?"

"ଏ କାରଖାନାଟି ଆଗେ ଆମ ସରକାରଙ୍କର ଥିଲା । ଲାଭ ନହେବାରୁ ସେ ଆମେରିକା କମ୍ପାନୀକୁ ବିକି ଦେଲେ । ଆସ୍ତେ ଆସ୍ତେ ସେହି ଆମେରିକାନ୍ କମ୍ପାନୀଗୁଡ଼ିକ ଆମ ସମ୍ପଦର ମାଲିକ ହୋଇଛନ୍ତି ।"

"ଶ୍ରମିକ ବିହୀନ କାରଖାନାଟି ଚାଲୁଛି କିପରି ?"

"ଏହା ସ୍ୱୟଂ ଚାଳିତ କାରଖାନା । ମ୍ଭୁଟେନିକ୍ ଦ୍ୱାରା ପରିଚାଳିତ ହୋଇ ଏହି ପରି ଅନେକ କାରଖାନା, ଖଣି, ରେଳଗାଡ଼ି ବନ୍ଦର ଇତ୍ୟାଦି ଚାଲୁଛି । ସେଠାରେ ମଣିଷର ଶ୍ରମ ଦରକାର ନାହିଁ । ସେଥିପାଇଁ ଆମେ ସମସ୍ତେ ଛଟେଇ ହୋଇ ଏହିପରି ଅବସ୍ଥାରେ ପଡ଼ିଛୁ । ସେମାନଙ୍କ ପାଇଁ ଚିଡ଼ିଆଖାନାର ଜନ୍ତୁ ପାଲଟି ଯାଇଛୁ ।

ଅତିକ୍ଷୀଣ ସ୍ୱରରେ ସେ ସମସ୍ତ କଥା କହି ଦେଲା । ଆକାଶକୁ ହାତ ବଢ଼ାଇବାର କାରଣ ବୁଝିନେଲି । ଚନ୍ଦ୍ର ବିହୀନ ନୀଳ ରଙ୍ଗର ଆକାଶରେ ଥିବା ତାରକାଗୁଡ଼ିକ କଦାଚିତ ଅନ୍ଧକାରକୁ ଦୂର କରି ପାରିବେନି, ବରଂ ଦୁନିଆଁଟାକୁ ଅଧିକରୁ ଅଧିକ ଅନ୍ଧାର ମଧ୍ୟକୁ ଠେଲି ଦେବାର ସହାୟକ ହେବ ବୋଲି ମୁଁ ମନ ମଧ୍ୟରେ ସ୍ଥିର କରିନେଇଥିଲି । ପୂର୍ଣ୍ଣ ଚନ୍ଦ୍ର ବା ସୂର୍ଯ୍ୟଙ୍କୁ ଉଦିତ କରିବାକୁ ହେଲେ ପୂର୍ବାକାଶ ନିଶ୍ଚୟ ରକ୍ତ ବର୍ଣ୍ଣ ଧାରଣ କରିବ । ହମିଦ୍‌ର କଥା ସରିଲା ବେଳକୁ ଗୋଟାଏ ଗୋରା ଲୋକ ଆସି ବନ୍ଧୁକ ଦେଖାଇ ତାକୁ କ୍ୱାଟର ମଧ୍ୟକୁ ଘଉଡ଼ାଇ ନେଲା । ତାକୁ କ୍ୱାଟର ମଧ୍ୟରେ ପୂରାଇ ଗେଟ - ଗ୍ରିଲ୍‌ଟିକୁ ଦେଇ ଦେଲା । ତା' ଉପରକୁ ଦୁଇଖଣ୍ଡ ପାଉରୁଟି ଫିଙ୍ଗି ଦେଲା । ଆମ ମଧ୍ୟରେ ଅନେକ ଅକୁହା କଥା ରହିଗଲା । ମୋତେ ପଳାଇ ଯିବାକୁ ସେ ହାତଠାରି ଇଙ୍ଗିତ କଲା । ରାସ୍ତା କଡ଼ର ବୁଦ୍ ବୁଦୁକିଆ ବଣ ଦେଇ ମୁଁ ଦୌଡ଼ି ପଳାଇଲି, ଲାଲ ପତାକା ଉଡ଼ୁଥିବା ଭଙ୍ଗା କୋଠାକୁ ।

ମଇଳା ତ୍ରିରଙ୍ଗା ପତାକା ଉଡ଼ୁଥିବା କୋଠା କଡ଼ରେ ଗଲାବେଳେ ମୁଁ ଘର ମଧ୍ୟକୁ ଭଲ କରି ଦେଖିଲି । ଦୁଇ ଚାରିଜଣ ଭାରତୀୟ, ତିନିଜଣ ରାମାନନ୍ଦୀ ଚିତାକଟା ବିଭିନ୍ନ ଭାରତୀୟ ପୋଷାକ ପିନ୍ଧିଥିବା ପୌଢ଼ ଲୋକ ଦୁଇଜଣ ଗୋରା ସହ ବସି ଅତି ଆନନ୍ଦରେ ଭୋଜନ କରୁଥିଲେ । ସେମାନଙ୍କ ଖାଦ୍ୟ ସାମଗ୍ରୀ ଅତି ମୂଲ୍ୟବାନ ପରିଜଣା ପଡ଼ୁଥିଲା । ଗୋରା ସାହେବଟି ଗୋଟିଏ ମିଲିଟାରୀ ପୋଷାକ ପିନ୍ଧି ଥିଲା । ମୁଣ୍ଡରେ ଥିବା ଟୋପିରେ ନୀଳ ରଙ୍ଗ ଉପରେ କେତେ ଗୁଡ଼ିଏ ତାରା ଚିହ୍ନ ଥିଲା । ସତେ ଯେପରି ଅନ୍ଧାର ରାତି ଆକାଶର ଟୁକୁରା ଖଣ୍ଡେ ମୁଣ୍ଡାଇଛନ୍ତି ବିଶ୍ୱ ଜନସାଧାରଣଙ୍କୁ ଅନନ୍ତ ଅନ୍ଧକାରକୁ ଠେଲି ଦେବା ପାଇଁ । ସେହି ଗୋରା ସାହେବ-ମାନଙ୍କ ସହ ଭୋଜନରେ ଲିପ୍ତଥିବା ଭାରତୀୟମାନଙ୍କ ପ୍ରତି ମୁଁ ଘୃଣାରେ ଭ୍ରୂକୁଞ୍ଚିତ କଲି । ସେମାନେ ଅନ୍ଧ ! ଇତିହାସରୁ କିଛି ଶିକ୍ଷା ଲାଭ କଲେ ନାହିଁ । ନା, ନା, ସେମାନେ ସ୍ୱାର୍ଥ-ନ୍ୱେଷୀ, ନିଜର ସ୍ୱାର୍ଥପାଇଁ ଦୁନିଆକୁ ଛାରଖାର କରୁଥିଲେ ।

ମୁଁ ସେହି ବୁଦୁ ବୁଦୁକିଆ ଜଙ୍ଗଲ ଦେଇ ଲାଲ ପତାକା ଉଡ଼ୁଥିବା ଭଙ୍ଗା କୋଠା ଘରକୁ ଗଲି । ଭଙ୍ଗା କୋଠାଘର ସମ୍ମୁଖରେ ବେଶ୍ କଙ୍କାଳଙ୍କର ଭିଡ଼ ଥିଲା । ଘର ମଧ୍ୟରେ ମୁହଁ ଶୁଖି ଯାଇଥିବା କଙ୍କାଳମାନଙ୍କର କେତେ ଗୁଡ଼ିଏ ଗୋଷ୍ଠୀ ବିଭିନ୍ନ ପ୍ରକୋଷ୍ଠରେ ବସି ଯୁକ୍ତି ତର୍କ କରୁଥିଲେ । ଗୋଷ୍ଠୀମାନଙ୍କ ମଧ୍ୟରେ ଚାଲିଥିଲା ତୀବ୍ରବାକ୍ୟ ବିନିମୟ, ପ୍ରତ୍ୟେକ ଗୋଷ୍ଠୀ ଦୋଷରେ ପଙ୍କ ଫିଙ୍ଗା ଫିଙ୍ଗି ହେଉଥିଲେ । ବାହାରେ ଥିବା କଙ୍କାଳମାନଙ୍କ ମଧ୍ୟରେ ଅସନ୍ତୋଷର ବହ୍ନି ଜଳୁଥିଲା, ସେମାନେ ଏକ ସ୍ୱରରେ ଚିତ୍କାର କରୁଥିଲେ । ସମସ୍ତଙ୍କ ମୁହଁରେ ଥିଲା ଗୋଟିଏ କଥା, ଫାଶୀ କି ମଶାଣି କି ଗଲା ବେଳେ ବି ଗୋଷ୍ଠୀ ବିବାଦ ? ସେମାନଙ୍କର ଐକ୍ୟର ଚୈତନ୍ୟ କଅଣ ଉଦିତ ହେବନି ? ସେହି ଚୂର୍ଣ୍ଣୀଭୂତ କଙ୍କାଳମାନଙ୍କ ମଧ୍ୟରେ ମୁଁ ରାତିଟି କଟାଇ ଦେଲି ।

ସକାଳୁ ମେଘଟା ଆକାଶକୁ ଗ୍ରାସ କରିଥିଲା । ସେ ଦିନ ସୂର୍ଯ୍ୟ ଉଦୟ ହୋଇ ନଥିଲା । ଘର ଅଭିମୁଖେ ମୁଁ ଗାଡ଼ିଟି ଧରିଲି । ଗାଡ଼ିଟି ଜଙ୍ଗଲ ରାସ୍ତାରେ ଧୀରେ ଧୀରେ ଚାଲୁଥିଲା । ଚାରିଆଡ଼ ପରିବେଶ ସଂରକ୍ଷଣ ପାଇଁ ଇଉକାଲି ପଟାସ୍‌ର ସବୁଜ ବନାନୀ ସୃଷ୍ଟି ହୋଇଥିଲା । ମଝିରେ ମଝିରେ ଅଳ୍ପ କେତୋଟି ଆମ୍ବ, ପଣସ, ଜାମୁ ଇତ୍ୟାଦି

ଫଳ ଧାରୀ ବୃକ୍ଷ ରୋପଣ କରାହୋଇଥିଲା । ସେ ଗୁଡ଼ିକ ଇଉକାଲିପଟସ୍‌ର କାୟାତଳେ ବୃଦ୍ଧି ପାଉ ନଥିଲା । ତଥାପି ସହରର କଙ୍କାଳମାନଙ୍କ ପରି ବଞ୍ଚି ରହିଥିଲା । ସେହି କେତୋଟି ବୃକ୍ଷ । ଗାଡ଼ିଟି ହର୍ଷପୁର ଗ୍ରାମ ନିକଟ ରାସ୍ତାରେ ଗଲାବେଳେ ରାସ୍ତା ପାର୍ଶ୍ୱର ଦୃଶ୍ୟ ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଥିଲି । ନରନାରୀମାନେ ଛିନ୍ନ ପରିଧାନକୁ ପିନ୍ଧିଦେଇ ମାଙ୍କଡ଼ଙ୍କ ପରି କୁଦା ମାରୁଥିଲେ । ସେମାନଙ୍କ ମୁଖରେ ଭାଷା ବଦଳରେ କେତେ ଗୁଡ଼ାଏ ଶବ୍ଦ ଥିଲା । ସେ ଶବ୍ଦକୁ ମୁଁ ବୁଝି ପାରୁନଥିଲି । ଯେଉଁ ଲୋକଗୁଡ଼ାକ ମାଙ୍କଡ଼ଙ୍କ ପରି ଶବ୍ଦ କରି ଗଛ ଉପରେ ଡିଆଁ ଦେଇ କରି ପାରୁନଥିଲେ ସେମାନେ ବୃକ୍ଷ ମୂଳରେ ବଣ୍ୟ ଜନ୍ତୁଙ୍କର ଖାଦ୍ୟ ହେଉ ଥିଲେ । ମନ ହେଉଥିଲା ଗାଡ଼ିକି ଅଟକାଇ ତାଙ୍କର ଏମିତି ଅବସ୍ଥାର କାରଣ ବୁଝିବା ପାଇଁ । ହେଲେ କହିଲେବି ଗାଡ଼ି ଚାଳକ ଗାଡ଼ି ଅଟକାଉ ନଥିଲେ । କିଛି ଘଣ୍ଟା ପରେ ଆମ ଗାଁ ଷ୍ଟାଣ୍ଡରେ ଗାଡ଼ିଟି ଅଟକି ଥିଲା । ମୁଁ ମନେ ମନରେ ଉଦ୍ଧାଇ ପଡ଼ିଲି । ଗାଡ଼ିଟି ପୁଣି ତା'ବାଟରେ ଚାଲିଗଲା । ଷ୍ଟାଣ୍ଡଟି ସଦାବେଳେ ଲୋକାରଣ୍ୟ ହେଉଥିଲା । କିନ୍ତୁ ସେଦିନଟି ଥିଲା ଭିନ୍ନ ପ୍ରକାରର । ଷ୍ଟାଣ୍ଡଟି ଥିଲା କେବଳ ଶୂନ୍ୟ । ପରିବର୍ତ୍ତନରେ ମୁଁ ଆଶ୍ଚର୍ଯ୍ୟ ହେଉଥିଲି । କାହାକୁ କିଛି ନକହି ମୁଁ ଗ୍ରାମ୍ୟ ରାସ୍ତାରେ ଚାଲିବାକୁ ଆରମ୍ଭ କଲି । ଗ୍ରାମ୍ୟଗୁଡ଼ିକ ଅରଣ୍ୟ ବନ ହୋଇଥିଲା । ମୋ'ର ପଡ଼ୋଶୀ, ବନ୍ଧୁ ବାନ୍ଧବ ସମସ୍ତେ ମାଙ୍କଡ଼ ପରି ବୃକ୍ଷ ଡାଳରେ ବସିଥିଲେ । ଭୋକ ନିବାରଣ ପାଇଁ ସେମାନେ ବୃକ୍ଷର କଅଁଳିଆ ପତ୍ର ଖାଉଥିଲେ । ଗାଁ ନିକଟରେ ପହଞ୍ଚି ମୁଁ ମୋର ଭାଇ, ଭାଉଜ, ଭାଇବୋହୂ, ପୁଅଝିଅ, ପଡ଼ୋଶୀବୋହୂ ଇତ୍ୟାଦି ବନ୍ଧୁ ବାନ୍ଧବଙ୍କୁ ଦେଖିଲି । ସେମାନେ ମର୍କଟ ମର୍କଟୀ ସାଜି ଗଛ ଉପରେ ବସିଛନ୍ତି । ସେମାନଙ୍କର ଏପରି ଅବସ୍ଥାର କାରଣ ମୁଁ ବୁଝିପାରୁ ନଥିଲି । କାରଣ ବୁଝିବା ପାଇଁ ମୁଁ ସେମାନଙ୍କୁ ଅନେକ ପ୍ରଶ୍ନ କଲି । ସେମାନେ ନିରୁତ୍ତର ଥିଲେ । କେବଳ ଆକାଶକୁ ଚାହୁଁଥିଲେ । ନୀଳ ଆକାଶକୁ ବାଦଲ ଢାଙ୍କି ଧରିଥିଲା । ଅନେକ ସମୟ ପରେ ସେମାନଙ୍କଠାରୁ ବୁଝିଲି ଅଭୟାରଣ୍ୟ ସୃଷ୍ଟି ପାଇଁ ଚାଷ ଜମି ହରାଇ ସେମାନେ ମର୍କଟ ଓ ମର୍କଟୀ ସାଜିବାକୁ ବାଧ ହୋଇଛନ୍ତି । ଆମକୁ ପୁଣି ଆଦିମ ଯୁଗକୁ ଫେରାଇବାକୁ ବାଧ କରାହୋଇଛି । ପାଶ୍ଚାତ୍ୟ ଜଗତର ଏହା ଚକ୍ରାନ୍ତର କାର୍ଯ୍ୟ । ଆମ ସରକାର ସେହି ଦେଶର ଶିଳ୍ପ ପତିଙ୍କୁ ନିମନ୍ତ୍ରଣ କରି ଆଣିବାର ପରିଣାମ । ଆଜି ସେମାନେ ଆମ ସମସ୍ତ ପ୍ରାକୃତିକ ସମ୍ପଦର ମାଲିକ । ସ୍ୱାଧୀନ ଅର୍ଥନୀତି ନାମରେ ଆଦିମ ସମାଜକୁ ପ୍ରତ୍ୟାବର୍ତ୍ତନର ଅବସ୍ଥା ଆମ ଲୋକଙ୍କୁ ଭୋଗ କରିବାକୁ ପଡ଼ୁଛି ।

ଏହି ପରିସ୍ଥିତିରେ ମୁଁ ନାଲିଆ ରୁମାଲ ଖଣ୍ଡେ ବାହାର କରି ତାକୁ ଉଡ଼ାଇଲି, ପାଟି କରି କହିଲି, "ହେ କଙ୍କାଳ ସାର ମଣିଷ ! ହେ ମର୍କଟ ମର୍କଟୀ ଗଣ ! ତୁମେ ମଣିଷ । ତୁମ ଅବସ୍ଥା ତୁମେ ବୁଝ । ଶତ୍ରୁ ବିରୁଦ୍ଧରେ ସଂଗ୍ରାମର ଐକ୍ୟ ଗଢ଼ିତୋଳ । ମାଙ୍କଡ଼ ସାଜି ପତ୍ର ଖାଅ ନାହିଁ । ତୁମେ ମଣିଷ, ମଣିଷ ପରି ବଞ୍ଚ । ଏହି ଦେଶର ପ୍ରାକୃତିକ ସମ୍ପଦ ମାଲିକାନା ସାବ୍ୟସ୍ତ କର । ଗୋଷ୍ଠୀ ବିବାଦରୁ ଦୂରରେ ରହି ଐକ୍ୟବଦ୍ଧ ସଂଗ୍ରାମ କର ।" ମୋର ଧ୍ୱନି ବନାନୀ ଓ ପାହାଡ଼ରେ ପ୍ରତିଧ୍ୱନିତ ହେଉଥିଲା । କଙ୍କାଳସାର ମଣିଷଗୁଡ଼ାକ ମୋ ଚାରି ପାଖରେ ରୁଣ୍ଡିଭୂତ ହେଉଥିଲେ । ସଂଗ୍ରାମର ଆବାଜ ପାଇଁ ସେମାନେ ବିଭିନ୍ନ ପ୍ରକାରର ଧ୍ୱନି ସୃଷ୍ଟି କରୁଥିଲେ । ସେ ଧ୍ୱନିର ଶକ୍ତିରେ ଇଉକାଲିପଟାସ୍ ଗଛଗୁଡ଼ିକ ଭାଙ୍ଗି ପଡ଼ୁଥିଲା, ପାହାଡ଼ଟା କମ୍ପି ଉଠୁଥିଲା, ଆକାଶର ମେଘଟା ଅପସାରିତ ହେଉଥିଲା, ସୂର୍ଯ୍ୟ ରଶ୍ମି ଦିନଆଲୋକ ବିଛେଇ ହୋଇ ପଡ଼ୁଥିଲା···

ମୋ ନିଦ ଭାଙ୍ଗିଲା ବେଳକୁ ସକାଳ ହୋଇ ଯାଇଥିଲା । ତର ତର ହୋଇ ନିତ୍ୟ କର୍ମ ସାରିଦେଇ ପ୍ରାତଃ ଗୁମ୍ଫିଆରେ ବସି ପଡ଼ିଲି । ସୋଭିଏତକୁ ଭାଙ୍ଗି ଦିଆହେଲା, କ୍ରେମଲିନ୍ ପ୍ରାସାଦରୁ ଲାଲ ପତାକାକୁ ଅବନତ କରାହେଲା ବୋଲି ରେଡ଼ିଓରେ ସମ୍ବାଦଟା ଅତି ଗମ୍ଭୀର ସ୍ୱରରେ ପାଠ କରା ହେଉଥିଲା । ସମ୍ବାଦଟା ଶୁଣି ପ୍ରଥମେ ମୁଁ ଚମକି ପଡ଼ିଲି । ତେବେ ଗତ ରାତିରେ ଦେଖିଥିବା ସ୍ୱପ୍ନଟା କଅଣ ସତ୍ୟରେ ପରିଣତ ହେବାକୁ ଯାଉଛି । ଇତିହାସର ରଥ ଚକ ପଛକୁ ଗଡ଼ିଲା । ନା, ନା, ଇତିହାସର ଚକ କଦାପି ପଛକୁ ଗଡ଼ି ପାରେନା । ଯେଉଁମାନେ ଚକକୁ ଗଡ଼ାଇବାକୁ ଚେଷ୍ଟା କରନ୍ତି ସେହିମାନେ ହିଁ ସେହି ଚକ ତଳେ ପଡ଼ି ବିଲୁପ୍ତ ହୁଅନ୍ତି । ଯେଉଁମାନେ ଇତିହାସର ଚକକୁ ପଛରୁ ଭିଡ଼ୁଛନ୍ତି ଇତିହାସର ଆବର୍ତ୍ତନରେ ସେମାନଙ୍କର ନିଶ୍ଚୟ ବିଲୋପ ଘଟିବ । ଏଇଟା ହିଁ ହେଉଛି ପ୍ରକୃତିର ନିୟମ, ଏହି ସମସ୍ତ ଭାବନାରେ ମୁଁ ଭାସି ଯାଉଥିଲି, ଇତିହାସର ଆବର୍ତ୍ତନରେ ଅଂଶିଦାର ହେବାପାଇଁ ମାନସିକ ଭାବେ ମୁଁ ପ୍ରସ୍ତୁତ ହେଉଥିଲି···

ସାଲେପୁର

# ନୂତନ ଅର୍ଥନୀତି ସମାଜବାଦୀ ଲକ୍ଷ୍ୟ ଓ ଆଦର୍ଶର ପରିପନ୍ଥୀ

● ଉପେନ୍ଦ୍ରନାଥ ନାୟକ

ଭାରତର ଗୁରୁତର ଅର୍ଥନୈତିକ ପରିସ୍ଥିତିକୁ ସୁଧାରିବା ଲାଗି ସରକାର ଯେଉଁ ନୂତନ ଅର୍ଥନୀତି ଓ ଶିଳ୍ପନୀତି ଘୋଷଣା କରିଛନ୍ତି ତାହାର ପରିପ୍ରେକ୍ଷୀରେ ଦେଶରେ ଯୋଜନାବଦ୍ଧ ଅର୍ଥନୈତିକ ବିକାଶର ଅନୁଧ୍ୟାନ, ଅନୁଶୀଳନ ଓ ମୂଲ୍ୟାୟନ ଏକାନ୍ତ ପ୍ରୟୋଜନ ।

୧୯୫୧ରୁ ୧୯୯୦ ମଧ୍ୟରେ ଦେଶରେ ଯେଉଁ ସାତଟି ଯୋଜନା ରୂପାୟିତ ହୋଇଛି ସେଥିରେ ମୋଟ ବ୍ୟୟ ହୋଇଛି ପ୍ରାୟ ୨୦୦,୦୦୦ କୋଟି ଟଙ୍କା । ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ମୋଟ ୧୯୬୦ କୋଟି ଟଙ୍କା । ବ୍ୟୟ ହୋଇଥିବା ସ୍ଥଳେ ସପ୍ତମ ପଞ୍ଚବାର୍ଷିକ ଯୋଜନାରେ ବ୍ୟୟର ପରିମାଣ ହୋଇଛି ୩୪୮୧୪୮ କୋଟି ଟଙ୍କା । ସେଥିମଧ୍ୟରୁ ଶତକଡ଼ା ୫୫ ଭାଗ ବ୍ୟୟିତ ହୋଇଛି ରାଷ୍ଟ୍ରାୟତ୍ତ କ୍ଷେତ୍ରରେ ଏବଂ ଶତକଡ଼ା ୪୫ ଭାଗ ବ୍ୟୟିତ ହୋଇଛି ଘରୋଇ କ୍ଷେତ୍ରରେ ।

ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ କେନ୍ଦ୍ରୀୟ ରାଷ୍ଟ୍ରାୟତ୍ତ କ୍ଷେତ୍ରରେ ୨୯ କୋଟି ଟଙ୍କା ବିନିଯୋଗ କରାଯାଇଥିବା ବେଳେ ସପ୍ତମ ଯୋଜନାରେ ବିନିଯୋଗ କରାଯାଇଛି ୪୨୬୬୩ କୋଟି ଟଙ୍କା । ପ୍ରଥମ ଯୋଜନାରେ କେନ୍ଦ୍ରୀୟ ରାଷ୍ଟ୍ରାୟତ୍ତ ଶିଳ୍ପସଂସ୍ଥା ବା ୟୁନିଟ ଗୁଡ଼ିକରେ ସଂଖ୍ୟା ମାତ୍ର ୫ଟି ଥିବା ବେଳେ ସପ୍ତମ ଯୋଜନା ଶେଷରେ ତାହା ୨୪୪ଟିକୁ ବୃଦ୍ଧି ପାଇଛି ଏବଂ ସେ ସବୁରେ ବିନିଯୁକ୍ତ ହୋଇଛି ମୋଟ ୯୯୩୧୫ କୋଟି ଟଙ୍କା । ସୁତରାଂ ଭାରତର ଅର୍ଥନୀତିରେ ରାଷ୍ଟ୍ରାୟତ୍ତ କ୍ଷେତ୍ରକୁ ଯେ ସର୍ବୋଚ୍ଚ ପ୍ରାଧାନ୍ୟ ଦିଆହୋଇ ଆସିଛି ତାହା ଉକ୍ତ ହିସାବରୁ ହିଁ ପରିସ୍ଫୁଟ ହୁଏ ।

କିନ୍ତୁ ସରକାର ଏବେ ଯେଉଁ ନୂତନ ଅର୍ଥନୀତି ଓ ଶିଳ୍ପନୀତି ଘୋଷଣା କରିଛନ୍ତି ସେଥିରେ ରାଷ୍ଟ୍ରାୟତ୍ତ କ୍ଷେତ୍ରକୁ ଆଉ ଆଗଭଳି ସର୍ବୋଚ୍ଚ ପ୍ରାଧାନ୍ୟ ଦିଆଯାଇନାହିଁ । ଅଷ୍ଟମ ଯୋଜନାର ଅଟକଳରୁ ତାହାର ସୂଚନା ଅତି ସ୍ପଷ୍ଟ । ୧୯୯୧-୯୨ ମୂଲ୍ୟସୂଚୀ ଭିତ୍ତିରେ ଏହି ଯୋଜନାରେ ବ୍ୟୟହେବ ମୋଟ ୭୯୨୦୦୦ କୋଟି ଟଙ୍କା । ସେଥି ମଧ୍ୟରୁ ବ୍ୟକ୍ତିଗତ ମାଲିକାନାଧୀନ କ୍ଷେତ୍ରର ଭାଗ ହେଉଛି ୪୫୦୦୦୦ କୋଟି ଟଙ୍କା । ଅବଶିଷ୍ଟ ୩୪୨୦୦୦ କୋଟି ଟଙ୍କା ରାଷ୍ଟ୍ରାୟତ୍ତ କ୍ଷେତ୍ର ପାଇଁ ନିର୍ଦ୍ଧିଷ୍ଟ କରାଯାଇଛି ।

ସମଗ୍ର ଯୋଜନା କାଳ ମଧ୍ୟରେ ରାଷ୍ଟ୍ରାୟତ୍ତ କ୍ଷେତ୍ର ସହିତ ତାଳ ଦେଇ ଅଗ୍ରଗତି କରିଛି ବ୍ୟକ୍ତିଗତ ମାଲିକାନାଧୀନ କ୍ଷେତ୍ର । ଏହି କ୍ଷେତ୍ରରେ ଅଗ୍ରଣୀ ସ୍ଥାନ ଅଧିକାର କରିଥିବା ଶିଳ୍ପପତିମାନଙ୍କର ସମ୍ପତ୍ତି ନିମ୍ନୋକ୍ତ ମତେ ବୃଦ୍ଧି ପାଇଛି : ଟାଟାର ମୋଟ ସମ୍ପତ୍ତି ୧୯୫୧ରେ ୧୧୬ କୋଟି ଟଙ୍କାରୁ ୧୯୮୭ରେ ୪୧୩୪.୨ କୋଟି ଟଙ୍କାକୁ, ବିରଲାର ମୋଟ ସମ୍ପତ୍ତି ୧୯୫୧ରେ ୧୫୩ କୋଟି ଟଙ୍କାରୁ ୧୯୮୭ରେ ୪୭୭୫ କୋଟି ଟଙ୍କାକୁ ବଢ଼ିଛି । ଏବଂ ସବୁଠାରୁ ବଡ଼ ୨୦ଜଣ ଶିଳ୍ପପତିଙ୍କର ସମ୍ପତ୍ତି ଏହି ସମୟ ମଧ୍ୟରେ ୬୪୮ କୋଟି ଟଙ୍କାରୁ ପ୍ରାୟ ୫୦,୦୦୦ କୋଟି ଟଙ୍କାକୁ ବୃଦ୍ଧି ପାଇଛି । ଅବଶ୍ୟ ସେମାନଙ୍କର ବ୍ୟବସାୟରେ ଖଟିଥିବା କଳାଧନ ଏହି ହିସାବର ଅନ୍ତର୍ଭୁକ୍ତ ନୁହେଁ ।

ଭାରତରେ ଏକଚାଟିଆ ପୁଞ୍ଜିର ଏହି ଅଭିବୃଦ୍ଧିକୁ ରୋକିବା ପାଇଁ ଯେଉଁ ଏକଚାଟିଆ ଓ ନିୟନ୍ତ୍ରଣମୂଳକ ବାଣିଜ୍ୟ କାରବାର ସମ୍ବନ୍ଧୀୟ (ଏମ୍. ଆର୍. ଟି. ପି) ଆଇନ ଦେଶରେ ପ୍ରବର୍ତ୍ତନ କରାଯାଇଥିଲା ତାହାର ଉଦ୍ଦେଶ୍ୟ କିପରି ବ୍ୟର୍ଥ ହୋଇଛି ଉକ୍ତ ପରିସଂଖ୍ୟାନରୁ ତାହା ସ୍ପଷ୍ଟ ପ୍ରମାଣିତ ହୁଏ ।

ବିଗତ ୪୦ ବର୍ଷ ମଧ୍ୟରେ ଦେଶର ରାଜନୈତିକ ପରିସ୍ଥିତି ଓ ବାତାବରଣରେ ମଧ୍ୟ ବହୁ ପରିବର୍ତ୍ତନ ପରିଲକ୍ଷିତ ହୁଏ । ସାମ୍ରାଜ୍ୟବାଦ ଓ ନବ-ଉପନିବେଶବାଦ ବିରୁଦ୍ଧରେ ସଂଗ୍ରାମ ଯାହା ଆମର ଜାତୀୟ କର୍ମନୀତି ଓ ବୈଦେଶିକ ନୀତିର ଅନ୍ୟତମ ପ୍ରଧାନ ଅଙ୍ଗଥିଲା ଏବଂ ଯାହା ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ପ୍ରଧାନ ଗୁଣଗତ ବୈଶିଷ୍ଟ୍ୟ ହୋଇଆସିଥିଲା ତାହା ଏବେ ଶିଥିଳ ଓ ଦୁର୍ବଳ ହୋଇଯାଇଛି । ସୋଭିଏତ୍ ୟୁନିଅନ ଓ ପୂର୍ବ ୟୁରୋପରେ ସମାଜବାଦୀ ଶାସନର ପତନ ଘଟିବା ସଙ୍ଗେ ସଙ୍ଗେ ସମାଜବାଦୀ ଓ ସାମ୍ୟବାଦୀ ଆନ୍ଦୋଳନ ଅନେକାଂଶରେ ତାର ତୀବ୍ରତା ଓ ଆକର୍ଷଣୀ ଶକ୍ତି ହରାଇଛି । ଆନ୍ଦୋଳନରେ ଭଟ୍ଟା ପଡ଼ିଛି । ପୁଞ୍ଜିବାଦ ଓ ସମାଜବାଦ ମଧ୍ୟରେ ମୌଳିକ ପାର୍ଥକ୍ୟ ଓ ଦ୍ୱନ୍ଦ୍ୱ ବିରୋଧକୁ ଯୋଡ଼ାଇବାର ଉଦ୍ୟମ ହେଉଛି । ସାମ୍ୟବାଦୀ ଚେତନା ସ୍ଥାନରେ ଏବେ ଦେଖା ଦେଇଛି ଭୋଗ ସର୍ବସ୍ୱ ମାନସିକତା । ଟ୍ରେଡ ୟୁନିଅନ ଆନ୍ଦୋଳନ ତାର ରାଜନୈତିକ ଲକ୍ଷ୍ୟ ଓ ମତାଦର୍ଶ ଭୁଲି ଏବେ କେବଳ ଅର୍ଥନୀତିବାଦରେ ପର୍ଯ୍ୟବସିତ ହୋଇଛି । ରାଜନୀତି ଯାହା ଏକଦା ତ୍ୟାଗ ଓ ଦେଶାତ୍ମବୋଧ ଉପରେ ଆଧାରିତ ହୋଇଥିଲା ତାହା ଏବେ ଭୋଗ, ସଙ୍କୀର୍ଣ୍ଣତା, ସୁବିଧାବାଦୀତା, ଗୋଷ୍ଠୀବାଦୀତା ଏପରିକି ଜାତିଆଣ ମନୋଭାବ ଓ ସାମ୍ପ୍ରଦାୟିକତାର କବଳରେ କବଳିତ ।

ସମାଜବାଦ ବା ସମାଜବାଦୀ ଢାଞ୍ଚାର ସମାଜ ଗଠନ ଭାରତର ଲକ୍ଷ୍ୟ ବୋଲି ନେହରୁଙ୍କ ସମୟରୁ କୁହା ହୋଇ-ଆସୁଥିଲେ ମଧ୍ୟ ଏବଂ ସମାଜବାଦ ଆମର ସାମ୍ବିଧାନିକ ଲକ୍ଷ୍ୟ-ରୂପେ ଗୃହୀତ ହୋଇଥିଲେ ମଧ୍ୟ ସେଇ ଆଦର୍ଶ ଉପରେ ପଦାଘାତ କରି ବର୍ତ୍ତମାନର ଭାରତ ସରକାର ପୁଞ୍ଜିବାଦୀ ପଥରେ ଆଗେଇ ଚାଲିବା ପାଇଁ ବଦ୍ଧ ପରିକର ହୋଇଛନ୍ତି । ସୋଭିଏତ୍ ୟୁନିଅନ୍ ଓ ପୂର୍ବ ୟୁରୋପର ଘଟଣାବଳୀ ଏ ଦେଶର [illegible] ଶ୍ରେଣୀଙ୍କୁ ମଧ୍ୟ ଏଥିପାଇଁ ଉତ୍ସାହ ଓ ସମର୍ଥନ ଯୋଗାଇଛି । [illegible] ମୁଦ୍ରାପାଣ୍ଠି ଓ ବିଶ୍ୱ ବ୍ୟାଙ୍କର ସର୍ତ୍ତରେ [illegible] ମାନଙ୍କୁ ଦେଇଛନ୍ତି ଅବାଧ ବଜାର [illegible] ନିର୍ଭର ହେବା ଲାଗି ସାହସ [illegible]

[illegible] ଓ ଆନ୍ତର୍ଜାତିକ ପୃଷ୍ଠଭୂମିରେ [illegible] ଅର୍ଥନୈତିକ ନୀତି ଓ ଶିଳ୍ପନୀତିର ପର୍ଯ୍ୟାଲୋଚନା ଆବଶ୍ୟକ ।

୧୯୯୦-୯୧ର ଅର୍ଥନୈତିକ ସର୍ବେକ୍ଷଣ ଅନୁଯାୟୀ କୃଷି ଉତ୍ପାଦନ ୨.୫ ଶତାଂଶ, ଶିଳ୍ପ ଉତ୍ପାଦନ ୮.୪ ଶତାଂଶ ଏବଂ ଜାତୀୟ ଆୟ ୫ ଶତାଂଶ ବୃଦ୍ଧି ପାଇଛି । ଅର୍ଥନୈତିକ ବିକାଶ ଓ ଅଭିବୃଦ୍ଧିର ଏଇ ହାର ନିହାତି ଅସନ୍ତୋଷଜନକ ନୁହେଁ । କାରଣ ତୁଳନାତ୍ମକ ଦୃଷ୍ଟିରୁ ବିଚାର କଲେ ଦେଖା-ଯିବ ଯେ ଏହି ସମୟରେ ଭାରତରେ ଅର୍ଥନୈତିକ ଅଭିବୃଦ୍ଧିର ହାର ଆମେରିକା, ବ୍ରିଟେନ୍ ଓ ବହୁ ଏସୀୟ ଦେଶଠାରୁ ଅନେକ ବେଶି । ତା'ହେଲେ ଆମର ଜାତୀୟ ଅର୍ଥନୀତିରେ, ଆମ ବୈଦେଶିକ ଦେଣନେଣ କ୍ଷେତ୍ରରେ ସଙ୍କଟ ସୃଷ୍ଟି ହେବାର କାରଣ କଣ ଯେଉଁଥି ପାଇଁ ଟଙ୍କାର ଅବମୂଲ୍ୟାୟନ ଓ ନୂତନ ନୀତିଗୁଡ଼ିକର ପ୍ରବର୍ତ୍ତନ ଆବଶ୍ୟକ ହେଲା ?

ଭାରତୀୟ ଅର୍ଥନୀତିରେ ଏହି ସଙ୍କଟ ଆମର ବଜେଟ ଓ ବାଣିଜ୍ୟକ ଦେଣନେଣରେ ମଧ୍ୟ ପ୍ରତିଫଳିତ ହୋଇଛି । ଏହି ବର୍ଷ ଆମର ରାଜସ୍ୱିକ ନିଅଣ୍ଟର ପରିମାଣ ହୋଇଛି ୩୭୬୨୧ କୋଟି ଟଙ୍କା ଯାହାକି ଆମର ମୋଟ ଜାତୀୟ ଆୟ (ଜି.ଏନ୍.ପି)ର ୮.୪ ଶତାଂଶ ଅଟେ । ସେହିପରି ଆମର ଆମଦାନୀର ପରିମାଣ ୪୩୧୭୦ କୋଟି ଟଙ୍କା ହୋଇଥିବା ସ୍ଥଳେ ରପ୍ତାନୀର ପରିମାଣ ହୋଇଛି ୩୨୫୨୧ କୋଟି ଟଙ୍କା । ଆଜି ଗଚ୍ଛିତ ବୈଦେଶିକ ମୁଦ୍ରାର ପରିମାଣ ୨୫୦୦ କୋଟି ଟଙ୍କାରୁ କମ୍ ହୋଇଛି । ଯଦିଓ ଇତିମଧ୍ୟରେ ତାହା ୯୦୦୦ କୋଟି ଟଙ୍କାକୁ ପୁନଶ୍ଚ ବୃଦ୍ଧି ପାଇଥିବା ସରକାରୀ ସୂତ୍ରରୁ ଜଣାଯାଏ ।

୧୯୯୦-୯୧ରେ ପାଇକାରୀ ମୂଲ୍ୟସୂଚୀ ପୂର୍ବ ବର୍ଷ ତୁଳନାରେ ୭ ଶତାଂଶ ବୃଦ୍ଧି ପାଇ ୧୩.୭ ଶତାଂଶ ହୋଇଛି । କିନ୍ତୁ ଅତ୍ୟାବଶ୍ୟକ ନିତ୍ୟବ୍ୟବହାର୍ଯ୍ୟ ପଣ୍ୟର ମୂଲ୍ୟ ହାରାହାରି ୨୫ ଶତାଂଶ ବୃଦ୍ଧି ପାଇଛି ।

ଏଂପ୍ଲଏମେଣ୍ଟ ଏକ୍ସଚେଞ୍ଜର ହିସାବ ଅନୁଯାୟୀ ୩.୫୫ ଲକ୍ଷ ଲୋକ ବେକାର ତାଲିକାରେ ନାମ ଲେଖାଇଛନ୍ତି । କିନ୍ତୁ ପ୍ରକୃତ ବେକାରଙ୍କ ସଂଖ୍ୟା ବର୍ତ୍ତମାନ ୧୩ କୋଟିରୁ ଅଧିକ ହେବ ବୋଲି ଅନୁମାନ କରାଯାଉଛି ଏବଂ ଏଇ ହାରରେ ବୃଦ୍ଧି ପାଇଲେ ୨୦୦୦ ମସିହା ଶେଷରେ କର୍ମସଂସ୍ଥାନ ପ୍ରାର୍ଥୀ ବେକାରଙ୍କ ସଂଖ୍ୟା ୨୧ କୋଟିରେ ପହଞ୍ଚିବ ବୋଲି ଆଶଙ୍କା କରାଯାଉଛି ।

ଭାରତର ଅର୍ଥନୀତିରେ ଏଇ ଯେଉଁ ସର୍ବାତ୍ମକ ସଙ୍କଟ ସୃଷ୍ଟି ହୋଇଛି ସେଥିପାଇଁ ଭାରତର ଯୋଜନାବଦ୍ଧ ଅର୍ଥନୀତି ଉପରେ ଏବଂ ବିଶେଷ କରି ରାଷ୍ଟ୍ରାୟତ୍ତ କ୍ଷେତ୍ର ଉପରେ ଦୋଷା-ରୋପ କରାଯାଉଛି, ଯେପରି ସେଇଟା ଆମର ସମସ୍ତ ଅର୍ଥନୈତିକ ଦୁଃଖ ଦୁର୍ଦ୍ଦଶା ପାଇଁ ରାଷ୍ଟ୍ରାୟତ୍ତ କ୍ଷେତ୍ର ହିଁ ଦାୟୀ । ଏହି ଚିନ୍ତା-ଧାରା କେବଳ ସମାଜବାଦୀ ଦର୍ଶନର ପରିପନ୍ଥୀ ନୁହେଁ । ଆମର ଜାତୀୟ ସ୍ୱାଧୀନତା ସଂଗ୍ରାମର ଲକ୍ଷ୍ୟ ଓ ଆଦର୍ଶର ମଧ୍ୟ ଏହା ପରିପନ୍ଥୀ ।

ରାଷ୍ଟ୍ରାୟତ୍ତ କ୍ଷେତ୍ରରେ ଥିବା ଶିଳ୍ପ ସଂସ୍ଥାଗୁଡ଼ିକରେ ଲାଭ ହେଉନାହିଁ ଏବଂ ସେଗୁଡ଼ିକ ମଧ୍ୟରୁ ଅଧିକାଂଶ କ୍ଷତିରେ ଚାଲୁ-ଥିବାରୁ ଦେଶର ଅର୍ଥନୀତି କ୍ଷତିଗ୍ରସ୍ତ ହେଉଛି ବୋଲି ଯୁକ୍ତି ଦର୍ଶାଯାଉଛି । କିନ୍ତୁ ଘରୋଇ ବା ବ୍ୟକ୍ତିଗତ ମାଲିକାନାଧୀନ ଶିଳ୍ପ ସଂସ୍ଥାଗୁଡ଼ିକ କଣ ସବୁ ଲାଭରେ ଚାଲୁଛନ୍ତି ? ତା' ଯଦି ହୋଇଥାନ୍ତା ଦେଶରେ ପ୍ରାୟ ଅଢ଼େଇ ଲକ୍ଷ ଘରୋଇ ଶିଳ୍ପ ସଂସ୍ଥା ରୁଗ୍ଣ ବୋଲି ବିବେଚିତ ହୋଇଥାନ୍ତେ କାହିଁକି ? ଆଉ ସେଇସବୁ ଶିଳ୍ପ ସଂସ୍ଥା ମଧ୍ୟରୁ କେତେକ ବନ୍ଦ ହୋଇଗଲାଣି ଓ ଆଉ କେତେକ ବନ୍ଦ ହେବା ଉପରେ । ସେଗୁଡ଼ିକ ପାଇଁ ବେଶି ଭାଗ ଅର୍ଥ ପୁଣି ରାଷ୍ଟ୍ରାୟତ୍ତ ବ୍ୟାଙ୍କମାନଙ୍କରୁ ଆସିଥାଏ । ତା' ସତ୍ତ୍ୱେ ସେମାନଙ୍କର ଏ ଦୁରବସ୍ଥା କାହିଁକି ? ରାଷ୍ଟ୍ରାୟତ୍ତ କ୍ଷେତ୍ରରେ ଯେ ଦୋଷତ୍ରୁଟି ନାହିଁ ସେ ଯୁକ୍ତି କେହି କରୁନାହାନ୍ତି ବରଂ ଏହା ସ୍ୱୀକୃତ ଯେ ରାଷ୍ଟ୍ରାୟତ୍ତ କ୍ଷେତ୍ରକୁ ଅଧିକ ଦକ୍ଷ ଓ ଲାଭପ୍ରଦ କରିବା ପାଇଁ ଅତି ଦୃଢ଼ ଓ କଠୋର ପଦକ୍ଷେପ ଆବଶ୍ୟକ । କିନ୍ତୁ ତା ନକରି ରାଷ୍ଟ୍ରାୟତ୍ତ କ୍ଷେତ୍ର ଉପରେ ସମସ୍ତ ଦୋଷ ଲଦିଦେଇ ଘରୋଇ କ୍ଷେତ୍ରରେ ହେଉଥିବା ହଜାର ହଜାର କୋଟି ଟଙ୍କାର (ବର୍ତ୍ତମାନ ସୁଦ୍ଧା ୧୦,୦୦୦ କୋଟି ଟଙ୍କାରୁ ଅଧିକ) କ୍ଷତି ଓ ଅନ୍ୟାନ୍ୟ ଆର୍ଥିକ ଖିଲାପକୁ ଘାଙ୍କିବା କେଉଁ ଦେଶ ପ୍ରେମର ପରିଚୟକ ?

ତା' ଛଡ଼ା ହିସାବ କରି ଦେଖାଯାଇଛି ଯେ ରାଷ୍ଟ୍ରାୟତ୍ତ କ୍ଷେତ୍ରର ୟୁନିଟ୍ ବା ଶିଳ୍ପ ସଂସ୍ଥାଗୁଡ଼ିକ ୧୯୮୧-୮୨ରେ ୬୬୫୪ କୋଟି ଟଙ୍କା (ବିନିଯୁକ୍ତ ପୁଞ୍ଜିର ୧୨.୧ ଶତାଂଶ) ମୋଟ ଲାଭ ଏବଂ ୪୪୫.୯୨ କୋଟି ଟଙ୍କା (୨.୦୩ ଶତାଂଶ) ନିଟ୍ ଲାଭ କରିଥିଲାବେଳେ ଷଷ୍ଠ ପଞ୍ଚବାର୍ଷିକ ଯୋଜନା ଶେଷରେ ୪୬୨୭-୮୧ କୋଟି ଟଙ୍କା (୧୨·୭୨ ଶତାଂଶ) ମୋଟ ଲାଭ ଏବଂ ୯୦୮.୯୦ କୋଟି ଟଙ୍କା (୨.୫୦ ଶତାଂଶ) ନିଟ୍ ଲାଭ କରିଛନ୍ତି । ଆଉ ସପ୍ତମ ଯୋଜନା ଶେଷରେ ମୋଟ ଲାଭ ଓ ନିଟ୍ ଲାଭର ପରିମାଣ ହୋଇଛି ଯଥାକ୍ରମେ ୧୦୬୨୨.୭୩ କୋଟି ଟଙ୍କା (୧୨.୫୮ ଶତାଂଶ) ଓ ୩୭୮୧ କୋଟି ଟଙ୍କା (୪.୪୮) ଶତାଂଶ) । ୧୯୮୯-୯୦ରେ ପେଟ୍ରୋଲିଅମ୍ ଛଡ଼ା ଅନ୍ୟ ଉତ୍ପାଦନକାରୀ ୟୁନିଟ୍‌ଗୁଡ଼ିକରେ ମଧ୍ୟ ୩୯୧୬.୦୯ କୋଟି ଟଙ୍କା (୯.୫ ଶତାଂଶ) ମୋଟ ଲାଭ ଏବଂ ୯୭୬.୭୭ କୋଟି ଟଙ୍କା (୨.୩୭ ଶତାଂଶ) ନିଟ୍ ଲାଭ ହୋଇଛି ।

ସୁତରାଂ ରାଷ୍ଟ୍ରାୟତ୍ତ କ୍ଷେତ୍ରରେ କେବଳ ପେଟ୍ରୋଲିଅମ୍ ଛଡ଼ା ଅନ୍ୟ ଶିଳ୍ପରେ ଲାଭ ହେଉନାହିଁ ବୋଲି ଯେଉଁ ଅଭି-ଯୋଗ ହେଉଛି ତାହା ଠିକ୍ ନୁହେଁ । ବରଂ ଘରୋଇ କ୍ଷେତ୍ରର ଯେଉଁ ସବୁ ରୁଗ୍‌ଣ ଶିଳ୍ପକୁ ସରକାର ହାତକୁ ନେଇଛନ୍ତି ସେଥିରେ କ୍ଷତିର ପରିମାଣ ସବୁଠାରୁ ଅଧିକ ।

ଖାଲି ସେତିକି ନୁହେଁ, ରାଷ୍ଟ୍ରାୟତ୍ତ ସଂସ୍ଥାଗୁଡ଼ିକୁ କାହାପୁ ରାଜକୋଷକୁ ଶୁଳ୍କ ଓ ଟିକସ୍ ଆକାରରେ ଅଧିକ ଅର୍ଥ ଦାନ କରିଥାନ୍ତି । ସେମାନେ ଟିକସ୍ ଫାଙ୍କନ୍ତି ନାହିଁ ବା ଲୁଚାନ୍ତି ନାହିଁ । ସପ୍ତମ ଯୋଜନାରେ ରାଷ୍ଟ୍ରାୟତ୍ତ ସଂସ୍ଥାଗୁଡ଼ିକ ଶୁଳ୍କ ଓ ଟିକସ୍ ଆକାରରେ ୭୦୮୮୧ କୋଟି ଟଙ୍କା କାହାପୁ ରାଜ-କୋଷକୁ ଦାନ କରିଥିଲେ ।

ଅଧିକନ୍ତୁ ଏହା ସୁବିଦିତ ଯେ ରାଷ୍ଟ୍ରାୟତ୍ତ ଶିଳ୍ପ ସଂସ୍ଥା-ଗୁଡ଼ିକ ଜନସାଧାରଣଙ୍କ ସ୍ୱାର୍ଥ ଦୃଷ୍ଟିରୁ ପରିଚାଳିତ ହେଉଥିଲା-ବେଳେ ବ୍ୟକ୍ତିଗତ ମାଲିକାନାଧୀନ ଶିଳ୍ପ ସଂସ୍ଥାଗୁଡ଼ିକ ବ୍ୟକ୍ତି-ଗତ ସ୍ୱାର୍ଥ ଓ ମୁନାଫା ମନୋବୃତ୍ତି ଦ୍ୱାରା ପରିଚାଳିତ ହୋଇଥାନ୍ତି । ଫଳରେ ସେଠାରେ ଶୋଷଣ ବଳବତ୍ତର ହୋଇଥାଏ । ଏଭଳି ଅବସ୍ଥାରେ ରାଷ୍ଟ୍ରାୟତ୍ତ କ୍ଷେତ୍ରର ବିଲୋପ ଘଟିଲେ ବା ତାର ପ୍ରାଧାନ୍ୟ ଲୋପ ପାଇଲେ ଆମର ଈପ୍‌ସିତ ଲକ୍ଷ୍ୟ ସାମ୍ୟବାଦୀ ସମାଜ ଗଠନର ପ୍ରକ୍ରିୟା ଉପରେ ତାର କି ପ୍ରଭାବ ପଡ଼ିବ ତାହା ମଧ୍ୟ ବିଚାର୍ଯ୍ୟ ।

ଏଥିରୁ ପ୍ରମାଣିତ ହେଉଛି ଯେ ଯୋଜନା ଓ ରାଷ୍ଟ୍ରାୟତ୍ତ କ୍ଷେତ୍ର ଦେଶରେ ଉପୁଜିଥିବା ଅର୍ଥନୈତିକ ସଙ୍କଟର ପ୍ରଧାନ କାରଣ ନୁହେଁ । ସୁତରାଂ ବର୍ତ୍ତମାନ ଯୋଜନା ଓ ରାଷ୍ଟ୍ରାୟତ୍ତ କ୍ଷେତ୍ର ବିରୁଦ୍ଧରେ ଯେଉଁ ଅପପ୍ରଚାର ଚାଲିଛି ତାହା କାହାପୁ ସ୍ୱାର୍ଥ ଦୃଷ୍ଟିରୁ କରାଯାଉନାହିଁ । ଏହା କରାଯାଉଛି ବଡ଼ ବଡ଼ ପୁଞ୍ଜିପତି ବିଶେଷ କରି ବିଦେଶୀ ପୁଞ୍ଜିପତି ଓ ବହୁଜାତିକ ସଂସ୍ଥାମାନଙ୍କର ସ୍ୱାର୍ଥ ଦୃଷ୍ଟିରୁ । ଦେଶର ଶିଳ୍ପାୟନ, ଆତ୍ମନିର୍ଭରଶୀଳ ବିକାଶ ଏବଂ ଅର୍ଥନୈତିକ ସ୍ୱାଧୀନତା ଓ ସାର୍ବଭୌମତ୍ୱ ଉପରେ ଏହା ଏକ ଅନ୍ୟାୟ ଓ ଅବାଞ୍ଛିତ ଆକ୍ରମଣ ।

# ॥ ନାଲି ପତାକା ତୋତେ ସଲାମ ଦିଏ ॥

● ସୋମନାଥ ପାତ୍ର

ନାଲି ପତାକା, ନାଲି ପତାକା ତୋତେ ସଲାମ ଦିଏ
ତୁ ମୋର ସାଥୀ, ତୁ ମୋର ପ୍ରାଣ ବଞ୍ଚି ମୁଁ ଥିବା ଯାଏ ।
କୃଷି, ମୂଲିଆ ରାଇଜ ଗଢ଼ିବା ଧରମ ନେଇଛି ଯିଏ
ସକଳ ଦେଶେ ଶୋଷଣମୁକ୍ତ ସଂଗ୍ରାମ ଆଗେ ଥାଏ
ସେହି ପତାକା କାହାର ହସ୍ତ ଛଡ଼ାଇ ନେବରେ କିଏ
ନାଲି ପତାକା, ନାଲି ପତାକା ତୋତେ ସଲାମ ଦିଏ ॥ ୧ ॥

କୃଷି, ମୂଲିଆ, ଖଟିଖିଆର ଆତ୍ମା ହୋଇଛି ଯିଏ
କୃଷି, ମୂଲିଆ ଥିବାର ଯାଏ ତାକୁ ନାଶିବ କିଏ
ସକଳ ଦେଶେ ଉଡ଼ୁଛି, ଉଡ଼ିବ ଶୋଷଣ ଥିବା ଯାଏ
ସେହି ପତାକା କାହାର ହସ୍ତୁ ଛଡ଼ାଇ ନେବରେ କିଏ ?
...ତୋତେ ସଲାମ ଦିଏ ॥ ୨ ॥

ଯେଉଁ ପତାକା ଜୀବନ ସାଥୀ ସଂଗ୍ରାମେ ଆଗେ ଥାଏ
ଶୋଷଣ, କଷଣ, ମୁକ୍ତି ପାଇଁ ପଥ ଦେଖାଇଥାଏ
ଶୋଷଣ, କଷଣ ସଂଗ୍ରାମରୁ ଜନ୍ମ ନେଇଛି ଯିଏ
ତାକୁ ନାଶିବ କିଏ ? ତାକୁ ମୁଁ ସଲାମ ଦିଏ ॥ ୩ ॥

କୃଷି ମୂଲିଆ ଏକତା ଚିହ୍ନ ଯାଅଙ୍ଗେ ଶୋଭାପାଏ
ମୁକ୍ତ ଆକାଶେ ମୁକ୍ତି ପାଇଁ ଯେ ଆହ୍ୱାନ ଦେଇଥାଏ
ଜନମନକୁ ଶ୍ରେଣୀ ସଂଗ୍ରାମ ସଙ୍ଗୀତ ଯିଏ ଗାଏ
ସର୍ବହରାର ରକତରେ ତନୁ ଯାର ଭିଜିଥାଏ
ସେହି ପତାକା କାହାର ହସ୍ତୁ କାଢ଼ି ନେବରେ କିଏ ?
ନାଲି ପତାକା, ନାଲି ପତାକା ତୋତେ ସଲାମ ଦିଏ ॥ ୪ ॥

ଖଣି, ଖାଦାନ, ଖଳାବାଡ଼, କାରଖାନାର ଯାଏ
ଯହିଁ ସଂଗ୍ରାମ ବଞ୍ଚିବା ପାଇଁ ତହିଁ ଯେ ଉଡ଼ିଥାଏ
ଶ୍ରେଣୀ ସଂଗ୍ରାମେ ବିଜୟର ଶୁଭ ସଙ୍କେତ ଦିଏ
ସେହି ପତାକା କାହାର ହାତୁ ଛଡ଼ାଇ ନେବରେ କିଏ
...ତୋତେ ସଲାମ ଦିଏ ॥ ୫ ॥

ବଞ୍ଚିବା ପାଇଁ ଲଢେଇ କରି ରକ୍ତ ଢାଳିଛି ଯିଏ
ନିଜ ରକ୍ତରୁ ନିଜ ପତାକା ଜନ୍ମ ଦେଇଛି ଯିଏ
ନିଜ ଶ୍ରମର ହତିଆରକୁ ଆପିଛି ତାହା ଦେହେ
ସେହି ପତାକା ତାହାର ହାତୁ ଛଡ଼ାଇ ନେବ କିଏ
କୃଷି ମୂଲିଆ ଜନତା ପିଣ୍ଡେ ପରାଣ ଥିବା ଯାଏ
...ତୋତେ ସଲାମ ଦିଏ ॥ ୬ ॥

ପେଟକର ନିଆଁ ଜଳେ ଯା' ପେଟେ ପେଟକାଳ ଅଛି ଯିଏ
ପେଟକର ଦାଉ ଥମିବା ପାଇଁ ପାଣିରୁ ପେଟେ ପିଏ
ମୁକ୍ତ ଆକାଶ ତଳେ ଯେ ମାତ୍ର ବିଛଣା ପାରି ଶୁଏ
ଖଟି ଖଟି ଯେ ହାଲିଆ ହୋଇ ଶାନ୍ତିରେ ଶୋଇଯାଏ
ତାହାର ହାତୁ ନାଲି ପତାକା ଛଡ଼ାଇ ନେବ କିଏ
ସମାଜବାଦ ପଥରୁ ତାକୁ ହଟାଇ ନେବ କିଏ ? ॥ ୭ ॥

ଧୋଇ ଶୁଖାଇ ଖଣ୍ଡେ ବସନ ମାତ୍ର ଯେ ପିନ୍ଧୁଥାଏ
ଅଧାଲଙ୍ଗଳା ଶରୀରେ ଯିଏ ଦିନ କଟାଇନିଏ
ଜର ରୋଗରେ ପଡ଼ି ଯା' ପିଲା ଯମପୁରକୁ ଯାଏ
ଔଷଧ, ପଥି ଯୋଗାଇବା ସାତସପନ ହୁଏ
ଦିଅଁ, ଦେଉଳେ ଅଧିଆ ପଡ଼ି ହୁକୁମ ଆଶ୍ରା ନିଏ
ନାଲି ପତାକା ତାହାର ହାତୁ ଛଡ଼ାଇ ନେବ କିଏ ?
ସମାଜବାଦ ପଥରୁ ତାକୁ ହଟାଇ ନେବ କିଏ ? ॥ ୮ ॥

ବେକାର ହୋଇ ରାଜଦାଣ୍ଡରେ ମାତ୍ର ଯେ ଭ୍ରମୁଥାଏ
କେତେ ହାକିମ, କେତେ ଯେ ମନ୍ତ୍ରୀ ଧାଇଁ ଧାଇଁ ଯେ ଥକେ
ଚାକିରି ଖଣ୍ଡେ ପାଇବା ପାଇଁ କେତେ ସଲାମ ଦିଏ
ସମ୍ପତ୍ତି ଵିକ ଅଣ୍ଟାଗୁଞ୍ଜା ଲାଞ୍ଚ ଦେଉଥାଏ
ତଥାପି ବି ଚାକିରି ନାହିଁ ବୟସ ଶେଷ ହୁଏ
ନିରାଶ ହୋଇ ହାତ ପତାଇ ଭିକ୍ଷା ମାଗୁଥାଏ
ତାହାର ହାତୁ ନାଲି ପତାକା ଛଡ଼ାଇ ନେବ କିଏ ?
ସମାଜବାଦ ପଥରୁ ତାକୁ ହଟାଇ ନେବ କିଏ ? ॥ ୯ ॥

ଶୋଷଣର ଅତ୍ୟାଚାରରେ ଯେ ମାତ୍ର ଶୋଷିତ ହୁଏ
ଶାସନର ଆଇନ ଦଣ୍ଡେ ଯେ ମାତ୍ର ଦଣ୍ଡ ପାଏ,
ଦାନା, ଜଳ, ବାସ, କାମ ଅଭାବ ଯାର ଥାଏ
ଋଣର ଜାଲେ ଛନ୍ଦି ହୋଇ ଯେ ମାତ୍ର ମରୁଥାଏ,
ଖଟିବା ଛଡ଼ା ସୁଖ କଣ ଜାଣିନି ଜୀବନେ ଯିଏ
ଦୁଃଖ ଯାହାର ସାରା ଜୀବନ ସହଚର ଥାଏ,
ନାଲି ପତାକା ତାହାର ହାତୁ ଛଡ଼ାଇ ନେବ ବା କିଏ ?
ସମାଜବାଦ ପଥରୁ ତାକୁ ହଟାଇ ନେବ ବା କିଏ ?

●